# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|
| ୧ । ବସନ୍ତ କୁମାର | ୧ |
| ୨ । ଚନ୍ଦ୍ରକେତୁ ଓ ସୂର୍ଯ୍ୟକେତୁ | ୧୫ |
| ୩ । ଅକ୍ଷୟ କୁମାର ଓ ଅମରେନ୍ଦ୍ର କୁମାର | ୨୯ |
| ୪ । ଚନ୍ଦ୍ରକାନ୍ତ | ୪୪ |
| ୫ । ପଞ୍ଚକୁମାରଙ୍କ କଥା | ୪୮ |
| ୬ । ପ୍ରତାପ କୁମାର | ୬୦ |
| ୭ । ପ୍ରମୋଦ କୁମାର | ୭୦ |
| ୮ । ପ୍ରଦୀପ୍ତ କୁମାର | ୭୨ |
| ୯ । ପ୍ରବୀର କୁମାର | ୭୮ |
| ୧୦ । ପ୍ରସନ୍ନ କୁମାର | ୮୮ |
| ୧୧ । ଲକ୍ଷ୍ମଣ କୁମାର | ୧୦୩ |

( ଏହା ମଧ୍ୟରେ ଷୋଳଟି ରାଜକୁମାର କଥା ରହିଛି )



ମୁଦ୍ରାକର—ଦୁର୍ଗା ପ୍ରେସ, ଖଟ୍‌ବିନ ସାହି, କଟକ-୧

# ଷୋଡ଼ଶ କୁମାର ଚରିତ

## ବସନ୍ତ କୁମାର

ପ୍ଲକ୍ଷ ଦ୍ୱୀପର ରାଜା ଜଳନ୍ଧର ଦେବ । ତାଙ୍କ ରାଣୀଙ୍କର ନାମ ପଦ୍ମାବତୀ । ମନ୍ତ୍ରୀଙ୍କର ନାମ ସବୁଦ୍ଧି ସିଂହ । ରାଜାଙ୍କର ଗୋଟିଏ ବୋଲି ପୁଅ, ତା ନାଁ ବସନ୍ତ କୁମାର । ବସନ୍ତ କୁମାର ବିଦ୍ୟାରେ ଭାରି ନିପୁଣ । ଜଳନ୍ଧର ଦେବ ସୁଖରେ ପ୍ରଜାମାନଙ୍କୁ ପାଳି କୁମାରକୁ ରାଜଗାଦିରେ ବସାଇ ରାଣୀଙ୍କ ସହିତ ଅରଣ୍ୟକୁ ତପସ୍ୟା କରିବାକୁ ଗଲେ ।

ବସନ୍ତ କୁମାର ରାଜସିଂହାସନ ପାଇ ଖୁବ୍ ଯତ୍ନରେ ପ୍ରଜାମାନଙ୍କୁ ପାଳି ଅନେକଦେଶ ଜୟକରି ନିଜର ରାଜ୍ୟକୁ ବଢ଼ାଇଲେ । ଯେଉଁ ରାଜାମାନଙ୍କୁ ଯୁଦ୍ଧରେ ଜୟ କଲେ, ସେମାନଙ୍କ ଉପରେ କୌଣସି ଅତ୍ୟାଚାର ନ କରି ନିଜ ଅଧୀନରେ କରଦ ରାଜା କରି ରଖିଲେ । ତାଙ୍କର ଏହି ଦୟାଗୁଣ ସକାଶେ ସମସ୍ତେ ଧନ୍ୟ ଧନ୍ୟ କଲେ ।

ସେ ଦେଶରେ ଗୋଟିଏ କେଉଟ ମାଛ ମାରି ତାକୁ ହାଟରେ ବିକି କରି ତାର ପିଲାକୁଟୁମ୍ବକୁ ଚଳାଏ । ଦିନେ ସେହି କେଉଟ ଭଲ ମାଛ ମାରିବ ବୋଲି ଅନେକ ଦୂରକୁ ଚାଲିଗଲା । ଯାଉଁଯାଉଁ ଗୋଟିଏ ଦିବ୍ୟସୁନ୍ଦର ପୋଖରୀ ଦେଖିଲା । ପୁଣି ଦେଖିଲା ସେ

ପୋଖରୀରେ ନାଲି-ନେଳି-ହଳଦିଆ-ସବୁଜ ରଙ୍ଗର ମାଛ ସବୁ ଖେଳୁଛନ୍ତି । ଏହା ଦେଖି କେଉଟ ଆଶ୍ଚର୍ଯ୍ୟ ହୋଇ ସେ ପୋଖରୀରେ ଜାଲ ପକାଇଲା । ଲାଲ ବର୍ଣ୍ଣର ମାଛ ଗୁଡ଼ିଏ ଜାଲରେ ପଡ଼ିବାରୁ କେଉଟ ସେ ମାଛକୁ ଧରିଲା, ଭାବିଲା ଏ ମାଛ ନେଇ ଆମ ରାଜାଙ୍କୁ ଦେଲେ ତାଙ୍କଠାରୁ ବହୁତ ପୁରସ୍କାର ପାଇବ । ଏହା ଭାବି ସେ ମାଛଗୁଡ଼ିକୁ ଆଣି ରାଜାଙ୍କ ପାଖକୁ ଚାଲି ।

ରାଜା ଜନ୍ମ ହୋଇ ହେତୁ ପାଇଲାଦିନୁ ଏପରି ମାଛ ଦେଖି ନ ଥିଲେ । ମାଛ ଦେଖି ତାଙ୍କର ଭାରି ଲୋଭ ହେଲା । ସେ ମାଛକୁ ରଖି କେଉଟକୁ ପ୍ରଚୁର ଅର୍ଥ ଦେଇ ନିଜର ମଣୋହି ସକାଶେ ମାଛକୁ ଦାସୀ ହସ୍ତରେ ପଠାଇଦେବାକୁ ବସିଲେ । ରାଜା ଦାସୀକି ମାଛ ନବାକୁ କହନ୍ତେ ମାଛମାନେ ଫକ ଫାକ ଡେଇଁପଡ଼ିଲେ । ଦାସୀ ଧରିବାକୁ ଯାଆନ୍ତେ, ମାଛମାନେ ଡେଇଁ ରାଜାଙ୍କ ଗୋଡ଼ ତଳକୁ ଯାଇ କରୁଣ ଦୃଷ୍ଟିରେ ରାଜାଙ୍କ ମୁହଁକୁ ଚାହିଁ ରହିଲେ । ମାଛମାନଙ୍କର କରୁଣ ଦୃଷ୍ଟି ନିରୀକ୍ଷଣ କରି ରାଜା ଚକିତ ହେଲେ । ମନ୍ତ୍ରୀଙ୍କି କହିଲେ ମୋର ବଡ଼ ସନ୍ଦେହ ହେଉଛି । ମୁଁ ଆସି ବୁଢ଼ା ହେଲି, ଅନେକ ଦେଶ ବଣ ଜଙ୍ଗଲ ପାହାଡ ପର୍ବତ ବୁଲିଛି ମାତ୍ର ଏପରି ମାଛ ଦେଖି ନାହିଁ ।

ମାଛଙ୍କର କରୁଣ ଦୃଷ୍ଟିରେ ରାଜାଙ୍କର ମନ ତରଳିଗଲା । ସେ ମାଛମାନଙ୍କୁ ଗୋଟିଏ କୁଣ୍ଡରେ ରଖି ସେ କୁଣ୍ଡଟି ନିଜର ଶୋଇବା ଘରର ଦୁଆରମୁହଁରେ ଥୋଇଦେଲେ ।

ଅର୍ଦ୍ଧରାତ୍ର ସମୟରେ ଗୋଟାଏ ସୁ ସୁ ପବନ ବହିଲା, ରାଜାଙ୍କର ଦୁଆରମୁହଁରେ ଥିବା କୁଣ୍ଡପାଖରେ ଗୋଟିଏ ଝିଷଣାକୃତ

ରାକ୍ଷସ ଠିଆହୋଇଗଲା—ଏହିସମୟରେ ରାଜାଙ୍କର ନିଦ ଭାଙ୍ଗି-ଯିବାରୁ ସେ ରାକ୍ଷସକୁ ଦେଖି ତରବାରି ହସ୍ତରେ ପଦାକୁ ଆସନ୍ତେ ରାକ୍ଷସ ମାଛଗୁଡ଼ିକୁ ଧରି ଶୂନ୍ୟରେ ଉଡ଼ିଗଲା—ରାଜା ଏହି ଘଟଣାରେ ଆହୁରି ବିସ୍ମିତ ହେଲେ ।

କେଉଟର ତ ମନଲାଗିଛି, ସେ ତହିଁଆରଦିନ ସେ ପୋଖରୀକି ଯାଇ ଆଉ ଗୃବୋଟି ମାଛ ଧରି ଆସି ରାଜାଙ୍କ ପାଖରେ ହାଜର । ରାଜା ମାଛକୁ ରଖି କେଉଟକୁ କିଛି ପୁରସ୍କାର ଦେଲେ । କେଉଟ ପୁରସ୍କାର ପାଇ ଅତ୍ୟନ୍ତ ଆନନ୍ଦରେ ବିଦାୟ ନେଲାବେଳେ ରାଜା କହିଲେ ତୁ କାଲି ମାଛ ମାରିବା ପାଇଁ ଗଲାବେଳେ ମୋତେ ସଙ୍ଗରେ ନେବୁ, ମୁଁ ଦେଖିବି ଏପରି ମାଛ ସେଠାରେ କେତେ ଅଛନ୍ତି ।

ପୂର୍ବଦିନ ପରି ରାଜା ମାଛଗୁଡ଼ିକୁ ପାଣିକୁଣ୍ଡରେ ରଖି ନିଜର ଶୋଇବା ଘରକୁ ଗଲେ । ଆଗଭଳି ପୂର୍ବଦିନ ରାତିରେ ଯେପରି ସୁ ସୁ ପବନ ହୋଇଥିଲା, ସେହିପରି ହେଲା ଓ ଗୋଟିଏ ଦିବ୍ୟ ସୁନ୍ଦରୀ ସ୍ତ୍ରୀ ମାଛକୁଣ୍ଡ ପାଖରେ ଠିଆହୋଇଥିବାର ରାଜା ଦେଖିଲେ ରାଜା ଏହା ଦେଖି କବାଟ ଫିଟାଇ ବାହାରକୁ ଆସନ୍ତେ ସେହି ସ୍ତ୍ରୀଲୋକଟି ମାଛଗୁଡ଼ିକୁ ଧରି ସାଇଁକରି ଆକାଶକୁ ଉଠିଗଲା । ରାଜା କାବାହୋଇ ଅନାଇଛନ୍ତି । ଭାବିଲେ, ଏ କି ଭୌତିକ କାଣ୍ଡ ? ଏହାର ରହସ୍ୟ ଭେଦ କରିବା ଉଚିତ । ପ୍ରତିଜ୍ଞା କଲେ ପ୍ରାଣରେ ଯେତେ ବିପଦ ପଡ଼ୁ ନିଶ୍ଚୟ ଏହି କୌତୂହଳପୂର୍ଣ୍ଣ ବିଷୟ ଅଚିରେ ଜାଣିବାକୁ ହେବ ।

ତହିଁଆରଦିନ ସକାଳୁ କେଉଟ ଜାଲ ନେଇ ରାଜାଙ୍କ ପାଖକୁ ଆସିଲା । ରାଜା ନିତ୍ୟକର୍ମ ଶେଷ କରି ଅସ୍ତ୍ର ଶସ୍ତ୍ରରେ ସୁସଜ୍ଜିତ

ହୋଇ ଘୋଡ଼ାରେ ଚଢ଼ି କେଉଟଙ୍କୁ ସଙ୍ଗରେ ନେଇ ବାହାରିଲେ । ଯାଉଁ ଯାଉଁ ନଅର ପାଖରୁ ଅଳ୍ପ ଦୂରରେ ପୋଖରୀ ଘାଟରେ ପହଞ୍ଚ ଦେଖିଲେ ନାନାପ୍ରକାର ନାନାଦି ରଙ୍ଗର ମାଛ ସବୁ ସେ ପୋଖରୀରେ ପହଁରୁଛନ୍ତି । କେଉଟ ଜାଲ ପକାଇବାକୁ ବସନ୍ତେ ରାଜା କହିଲେ ତୁମ୍ଭେ ଆମ୍ଭ ନଗରରୁ ପ୍ରତିଦିନ ପଚିଶ ଟଙ୍କା କରି ପାଇବ । ଆଜି ମାଛ ମାରିବ ନାହିଁ, ମୁଁ ଫେରିବା ପର୍ଯ୍ୟନ୍ତ ନଅରରେ ରହିଥିବ । ଏହା କହି ଆଜ୍ଞାପତ୍ର ଖଣ୍ଡେ ଲେଖିଦେଇ କେଉଟଙ୍କୁ ବିଦାୟ କରିଦେଲେ ।

କେଉଟ ଆସିଲାପରେ ରାଜା ପୋଖରୀର ଚାରିପାଖରେ ବୁଲି ବୁଲି ସବୁ ଦେଖିସାରି ଆଗକୁ ଗଲେ—ଦେଖିଲେ ସୁବିସ୍ତୃତ ପ୍ରାନ୍ତର, ଜନବସତି କିଛି ନାହିଁ—ଅନେକଦୂର ଗଲାପରେ ଗୋଟିଏ ପ୍ରକାଣ୍ଡ କୋଠା ଦେଖିଲେ । ମାତ୍ର ଚାରିଆଡ଼େ ଅନାଇଲେ ବନ୍ୟଜନ୍ତୁ କିଛି ନାହିଁ । ରାଜା ଲୁକ୍କାୟିତରେ ଘୋଡ଼ାକୁ ରଖି ସେହି ନଅର ମଧ୍ୟରେ ପ୍ରବେଶ କଲେ । ଦେଖିଲେ ସବୁଘର ଶୂନ୍ୟ ହୋଇ ରହିଛି । ସବୁଘରେ ବିଛଣା, ଖଟ, ଆଲମାରୀ, ଚୌକି, ଟେବୁଲ ପ୍ରଭୃତି ସଜା ହୋଇଛି ମାତ୍ର ଲୋକ କେହି ନାହାନ୍ତି । ଏସବୁ ଦେଖି ଦେଖି ଯାଇ ଆଉଗୋଟିଏ ଘରେ ପହଞ୍ଚିଲେ, ଦେଖିଲେ ସେ ଘରେ ଗୋଟିଏ ପୁରୁଷ ଅଣ୍ଟାଯାଏ ପଥର ହୋଇଛି ଅଣ୍ଟା ଉପରକୁ ଠିକ୍ ଅଛି ।

ଏହା ଦେଖି ଆଶ୍ଚର୍ଯ୍ୟ ହୋଇ ସେ ପୁରୁଷକୁ ପଚାରିଲେ—ତୁମ୍ଭର ଏ ଅବସ୍ଥା କାହିଁକି ? କିପରି ହେଲା କହିପାରିବ କି ? ବିପଦଗ୍ରସ୍ତ ପୁରୁଷ ଏହାଶୁଣି ଭେ ଭେ କରି କାନ୍ଦି କହିଲା—ମୋର ଦୁଃଖ କଥା କଅଣ କହିବି, ମୁଁ ଏ ଦେଶର ରାଜା । ମୋର ରାଣୀ

ଇନ୍ଦ୍ରଜାଲ ତାନ୍ତ୍ରିକ ବିଦ୍ୟାବଳରେ ମୋତେ ଏପରି ଅବସ୍ଥା ଦେଇଛି । ଏ ରାଜ୍ୟର ଲୋକମାନଙ୍କୁ ପଥର କରିଦେଇଛି । ନଗରକୁ ଗୋଟିଏ ପୋଖରୀରେ ପରିଣତ କରି ନଗରବାସୀଙ୍କୁ ମାଛ କରି ଦେଇଛି । ସେ ଏଠାରୁ ଅଳ୍ପଦୂରରେ ରହୁଥିବା ଜଣେ ଅନାର୍ଯ୍ୟ ବ୍ୟକ୍ତି ସଙ୍ଗରେ ପ୍ରଣୟ କରେ ଏ କଥା ଜାଣି ମୁଁ ତାକୁ ବାରଣ କରନ୍ତେ ମୋର ଏ ଦୁର୍ଦ୍ଦଶା ହୋଇଛି । ଆପଣଙ୍କ ଭଳି କେତେ ରାଜପୁତ୍ର ଓ ରାଜା ଆସି ମୋର ଅବସ୍ଥା ଦେଖି ଦୁଃଖିତ ହୋଇ ମୋତେ ଏ ବିପଦରୁ ଉଦ୍ଧାର କରିବାକୁ କହୁଥିଲେ । ଦୁର୍ଯୋଗବଶତ ସେହି ମାୟାବିନୀର କୋପଦୃଷ୍ଟିରେ ପଡ଼ି ସେମାନେ ମଧ୍ୟ ପଥରପାଲଟି ଅଛନ୍ତି । ଆପଣ ସାବଧାନ ହୋଇ ଏ କାର୍ଯ୍ୟରେ ହାତଦିଅନ୍ତୁ । ବର୍ତ୍ତମାନ ଆପଣ ଏଠାରୁ ଚାଲିଯାନ୍ତୁ, ସେହି ରାକ୍ଷସୀ ମାୟାବିନୀ ବର୍ତ୍ତମାନ ଆସିବ । ଆପଣଙ୍କୁ ଦେଖିଲେ ବିପଦ ପଡ଼ିପାରେ । ଆପଣ ଶୀଘ୍ର ଚାଲିଯାନ୍ତୁ ।

ରାଜା ଏହା ଶୁଣି ସେଠାରୁ ଆସି ଗୋଟିଏ ନିଭୃତ ସ୍ଥାନରେ ଲୁଚିକରି ଅପେକ୍ଷା କଲେ । ଏହି ସମୟରେ ସେ ରାକ୍ଷସୀ ମାୟାବିନୀ ଆସି ପହଞ୍ଚିଲା । ତାର ସ୍ୱାମୀପାଖରେ ପହଞ୍ଚି କହିଲା; ଏ ଅବସ୍ଥାରେ ବି ତୋର ଚେତନା ଆସୁନାହିଁ—ମୋ ଇଚ୍ଛା ମୁଁ ଯାହା କଲି ତୋର କହିବାର ଅଧିକାର ନାହିଁ । ତୁ କ୍ଷମା ମାଗିଲେ ତୋର ଦଣ୍ଡରୁ ମୁକ୍ତି ପାଇବୁ ।

ଏହା ଶୁଣି ଅର୍ଦ୍ଧପଥର ରାଜା କହିଲେ, "ତୁ ରାକ୍ଷସୀ ମାୟାବିନୀ ମୋର ସ୍ତ୍ରୀ ହୋଇ ମୋ ପ୍ରତି ଯେଉଁ ବ୍ୟବହାର କରିଛୁ ଓ କରୁଛୁ ତାର ଫଳ ଦିନେ ତୋତେ ଭୋଗ କରିବାକୁ ହେବ । ଧର୍ମର ଜୟ ସଦାକାଳେ; ଅଧର୍ମର କ୍ଷୟ କାଳେ କାଳେ ।" ଏ କଥା ଶୁଣି ସେ

ରାକ୍ଷସୀ କ୍ରୋଧରେ ଉନ୍ମତ୍ତ ହୋଇ ତାର ସ୍ୱାମୀକ ପ୍ରହାର କରିବାକୁ ଲଗିଲ । ଏକଣେ ଆଠ ବେତ ମାରିମାରି ସେଠାରୁ ପ୍ରସ୍ଥାନ କରି ମନ୍ଦିରକୁ ଗଲ । ମନ୍ଦିରରେ ତାର ଠାକୁରାଣୀକୁ ପୂଜାକରି ଭୋଗରାଗ ଦେଇ ସେଠାରୁ ଫେରି ତାର ଅର୍ଦ୍ଧପଥର ସ୍ୱାମୀକୁ କିଛି ଦେଇ ବାକି ଖାଦ୍ୟଦ୍ରବ୍ୟ ନେଇ ବଣେ ବଣେ ଗଲ । ବଣ ଶେଷରେ ଗୋଟିଏ ଶ୍ରେଷ୍ଠ ପାହାଡ଼ ଅଛି । ସେଠାରେ କେତେଗୁଡ଼ିଏ ଗୁମ୍ଫା ଅଛି । ଗୋଟିଏ ଗୁମ୍ଫାରେ ତାହାର ଉପପତି ଶୋଇଥିଲ । ଏ ଯାଇ ପହଞ୍ଚନ୍ତେ ସେ ରାଗିକରି କହିଲ—ଏତେ ଡେରି କାହିଁକି ହେଲ ଏହିପରି କହି ରାଗିମାଗି ଗାଳିଗୁଲଜ କରନ୍ତେ ରାଣୀ ଅନୁନୟ ବିନୟ ହୋଇ ଅନେକ କହିଲ ।

ସେହି କୃଷ୍ଣକାୟ ଅନାର୍ଯ୍ୟ ଓ ରାଣୀ ଏକାଠିବସି ମଦ ମାଂସ ଖାଇଲେ, ଆମୋଦ ପ୍ରମୋଦ କଲେ । ରାଜା ଏହାସବୁ ଗୁପ୍ତରେ ଦେଖୁଥାନ୍ତି, ରାଗରେ ତାଙ୍କ ରକ୍ତ ଗରମ ହୋଇଗଲ । ହେଲେ କଣ କରିବେ, କାମ ହାସଲ କରିବାକୁ ହେଲେ ଧୈର୍ଯ୍ୟ ଦରକାର । ଏହା ଭାବି ସେଠାରୁ ଲୁଚିକରି ଫେରିଆସିଲେ । ରାଜା ସେଠାରୁ ଫେରି ଘୋଡ଼ାଉପରେ ଚଢ଼ି ନାଗାର୍ଜୁନ ପାହାଡ଼କୁ ଗଲେ । ସେଠାରେ ସିଦ୍ଧ ନାରାୟଣ ଅଛନ୍ତି । ରାଜା ତାଙ୍କରିପାଖରେ ନିଜର ଦୁଃଖ ଜଣାଇ ଉପବାସରେ ନାରାୟଣ ସେବାପୂଜା ନାମ ସଂକୀର୍ତ୍ତନ କରୁଥାନ୍ତି । ଉପବାସ ହେତୁ ରାଜାଙ୍କର ଶକ୍ତି କ୍ରମେ କମିଆସିଲ—ନାରାୟଣ ପ୍ରସନ୍ନ ନ ହୁଅନ୍ତେ ରାଜା ପଦ୍ମାସନରେ ବସି ନାରାୟଣ-ମନ୍ତ୍ର ଏକାଗ୍ରଭାବେ ଜପ କରିବାକୁ ଲଗିଲେ ।

ଏକେତ ଜଙ୍ଗଲଜାଗା—ସେଥିରେ ପୁଣି ପର୍ବତ, ପର୍ବତ ଉପରେ ମନ୍ଦିର, ସେଠାକୁ ଜନସମାଗମ ନାହିଁ । ଜଣେ ସନ୍ନ୍ୟାସୀ

ପ୍ରତିଦିନ ଆସି ଠାକୁରଙ୍କୁ ପୂଜାକରି ଚାଲିଯାନ୍ତି । ରାଜାଙ୍କର ମନବଳ ପରୀକ୍ଷା କରିବାକୁ ବ୍ୟାଘ୍ରମାନେ ଆସି ଗର୍ଜ୍ଜନ କରି ରାଜାଙ୍କୁ ଭୟ ଦେଖାଇଲେ । ମାତ୍ର ସେଥିରେ ରାଜାଙ୍କର ଧ୍ୟାନ ଭାଙ୍ଗିଲା ନାହିଁ । ତା'ପରେ ବଡ଼ ବଡ଼ ବିଷଧର ସାପମାନେ ଫଣାଟେକି ଫୁ ଫୁ ଗର୍ଜନ କରି ରାଜାଙ୍କୁ ଦଂଶନ କରିବାକୁ ଆସିଲେ । ସେଥିରେ ମଧ୍ୟ ରାଜାଙ୍କର ଧ୍ୟାନ ଭାଙ୍ଗିଲା ନାହିଁ । ସାପମାନେ ରାଜାଙ୍କ ଉପରେ ଚଢ଼ିଗଲେ, ସେଥିରେ ମଧ୍ୟ ରାଜାଙ୍କର ଧ୍ୟାନ ଭାଙ୍ଗିଲା ନାହିଁ । ଏହିପରି ଅନେକ ପରୀକ୍ଷାରେ ରାଜାଙ୍କର ଧ୍ୟାନ ନ ଭାଙ୍ଗିବାରୁ ନାରାୟଣଙ୍କ ଆସନ କମ୍ପିବାକୁ ଲାଗିଲା । ଭଗବାନ ଆଉ ଅପେକ୍ଷା ନ କରି ମା' ଲକ୍ଷ୍ମୀଙ୍କ ସହିତ ରାଜାଆଗରେ ଉଭାହୋଇ ରାଜାଙ୍କୁ ଆଉଁସି ଦେଲେ । ବିଷ୍ଣୁଙ୍କ କର ଲାଗି ରାଜାଙ୍କର ତେଜ ବଳବୀର୍ଯ୍ୟ ପୂର୍ବଠାରୁ ଦୁଇଗୁଣ ହୋଇଉଠିଲା । ରାଜା ଚକ୍ଷୁ ମେଲିକରି ଦେଖିଲେ ଆଗରେ ଶଙ୍ଖ ଚକ୍ର ଗଦା ପଦ୍ମ ଧାରି ଲକ୍ଷ୍ମୀଙ୍କସଙ୍ଗରେ ନିଜେ ପ୍ରଭୁ ବିରାଜମାନ ହୋଇଛନ୍ତି । ସେଠୁ ରାଜା ସାଷ୍ଟାଙ୍ଗରେ ପ୍ରଣିପାତ ହୋଇ ଉଠି ହସ୍ତଯୋଡ଼ି ଭଗବାନଙ୍କୁ ସ୍ତବକଲେ—

ଜୟ ଜୟ ନୃସିଂହ ତ୍ରୈଲୋକ୍ୟପତି ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତୋଠାରୁ ଉତ୍ପତ୍ତି ॥
ଋଷି ମୁନି ଯୋଗ କରି ନ ଦେଖନ୍ତି ତୋତେ ।
ଦୟା କରି ମହାପ୍ରଭୁ ଉଭା ମୋ ଅଗ୍ରତେ ॥
ଆତଙ୍କେ ଡାକିଲା ଗଜ ତାକୁ ରକ୍ଷା କଲ ।
ଚକ୍ର ପେଷି ନକ୍ର ନାଶି ଗଜକୁ ତାରିଲ ॥
ଦ୍ରୌପଦୀର ବିବସନ କାଳେ ନାରାୟଣ ।
ରକ୍ଷାକଲ ତାଙ୍କୁ କୋଟି ବସ୍ତ୍ର କରି ଦାନ ॥

ମୃଗୁଣୀକ ଅରଣ୍ୟରେ ପଡ଼ିଲ ବପତି ।
ଆତଙ୍କେ ସ୍ମରନ୍ତେ ନାଶ ଗଲା ତା ଦୁର୍ଗତି ॥
ଅଜାମିଳ ଏଡ଼େ ପାପୀ ତାହାକୁ ତାରିଲ ।
ହିରଣ୍ୟ ବଦାରି ପ୍ରହ୍ଲାଦେ ରକ୍ଷା କଲ ॥
ସୁଗ୍ରୀ ଭିରଜାକୁ ବାଳି ବଳରେ ହରିଲ ।
ତବ ଏକ କାଣ୍ଡେ ମରି ବଇକୁଣ୍ଠ ଗଲ ॥
ମୁଁ ଅଧମ ମୋ ଗୁହାରି ଶୁଣ ନାରାୟଣ ।
ଧର୍ମ ସ୍ଥାପି ଅଧର୍ମକୁ କର ନିବାରଣ ॥

ରାଜା ଏହିପରି ସ୍ତବ କରନ୍ତେ ନାରାୟଣ ସନ୍ତୁଷ୍ଟ ହୋଇ କହିଲେ, ରାଜା ତୋର ପବିତ୍ର ଚିତ୍ତ, ବିଶୁଦ୍ଧ ଭକ୍ତିରେ ମୁଁ ସନ୍ତୋଷ ହୋଇଅଛି ତୁ କି ବର ମାଗିବୁ ମାଗ, ମୁଁ ସେହି ବର ନିଶ୍ଚୟ ଦେବି ।

ଏ କଥା ଶୁଣି ରାଜା କହିଲେ, ପ୍ରଭୋ ! ଯେବେ ଅନୁଗ୍ରହ କଲେ, ଆପଣ ଜାଣନ୍ତି କ୍ଷତ୍ରିୟର ପ୍ରତିଜ୍ଞା ଭଗ୍ନ ହେଲେ ସେ ନର୍କଗାମୀ ହୁଏ । ମୁଁ ଦେଖିଲି ଗୋଟାଏ ରାଜ୍ୟର ରାଜା ତାର ସ୍ତ୍ରୀ କୁଳଟା ସ୍ୱଭାବ ଦେଖି ବାରଣ କରନ୍ତେ ତାର ସ୍ତ୍ରୀ ଯାଦୁ ବଳରେ ତାର ସ୍ୱାମୀକୁ ଅଧେ ପଥର ଅଧେ ମନୁଷ୍ୟ କରିଅଛି । ଦେଶଯାକ ସୈନ୍ୟମାନଙ୍କୁ ପଥର କରିଦେଇଛି । ନଗରକୁ ଗୋଟିଏ ପୁଷ୍କରିଣୀ କରି ନଗରବାସୀଙ୍କୁ ସେଥିରେ ମାଛ କରିଦେଇଛି ।

ମୁଁ ସେ ରାଜା ଓ ତାର ରାଜ୍ୟକୁ ଏ ମାୟା ମନ୍ତ୍ରରୁ ମୁକ୍ତ କରିବାକୁ ପ୍ରତିଜ୍ଞା କରିଛି । "ଧର୍ମମଧ୍ୟରେ ପରୋପକାର ଶ୍ରେଷ୍ଠଧର୍ମ । କିପରି ସେମାନଙ୍କୁ ଉଦ୍ଧାର କରିପାରିବି ମୋତେ ସେହି ଶକ୍ତି ଓ

ବର ଦିଅନ୍ତୁ । ଅନ୍ୟ ବରରେ ମୋର ଆବଶ୍ୟକ ନାହିଁ । ସର୍ବଦା ଆପଣଙ୍କ ପଦ୍ମପାଦରେ ମୋର ମନଥିବ । କୌଣସି ପାପକାର୍ଯ୍ୟରେ ମନ ଯିବନାହିଁ ଏହି ବର ମଧ୍ୟ ଦିଅନ୍ତୁ ।

ଭଗବାନ ଏହା ଶୁଣି ରାଜା ଉପରେ ସନ୍ତୋଷ ହୋଇ କହିଲେ, "ମୋ ବରରେ ତୁ ଏ ସବୁ ମୁକ୍ତ କରି ପାରିବୁ । ମୁଁ ଏହି ଖଡ୍‌ଗ ଦେଉଛି ଏହା ଗ୍ରହଣକର । ଏ ଖଡ୍‌ଗ ତୋ ହାତରେ ଥିଲେ କୌଣସି ଯାଦୁ ମନ୍ତ୍ର ତୋତେ ସ୍ପର୍ଶ କରି ପାରିବ ନାହିଁ । ତୁ ଏ ଖଡ୍‌ଗ ବଳରେ ଅସାଧ୍ୟ ସାଧନ କରି ପାରିବୁ । ଆହୁରି ମଧ୍ୟ ସୁଦର୍ଶନ ଚକ୍ରକୁ ଆଦେଶ ଦେଲେ, ତୁ ସର୍ବଦା ଅଦୃଶ୍ୟରେ ଥାଇ ଏ ରାଜାକୁ ରକ୍ଷା କରିବୁ ।" ଏହି ବର ଦେଇ ପ୍ରଭୁ ଅନ୍ତର୍ଦ୍ଧାନ ହୋଇଗଲେ ।

ରାଜା ବିଷ୍ଣୁଙ୍କଠାରୁ ଖଣ୍ଡା ପାଇ ଅଶ୍ୱରେ ଚଢି ସେହି ମାୟା ପୁରୀରେ ପହଞ୍ଚିଲେ । ସେଠାରେ ପହଞ୍ଚି ସେହି ଅର୍ଦ୍ଧମୃତ ରାଜାଙ୍କୁ ସାକ୍ଷାତ ଦେଇ ନାନାଦି ପ୍ରବୋଧ କରି କହିଲେ, "ଆଉ ଅଳ୍ପଦିନ ଏ କଷ୍ଟ ସହି ରହିଥାଅ । ମୁଁ ମୋର ପ୍ରାଣପାତ କରି ନିଶ୍ଚୟ ତୁମକୁ ମୁକ୍ତ କରିବ ।" ଏହା କହି ସେଠାରୁ ଆସି ସେ ଦୁର୍ବୃତ୍ତ ଥିବା ସ୍ଥାନରେ ପହଞ୍ଚିଲେ ।

ରାଣୀ ଭୋଗରାଗ ସାରି ତାର ଆରାଧ୍ୟ ଦେବତା ବେତାଳ ଡାକିଣୀମାନଙ୍କୁ ବଳି ଦେଇ ଭୋଗଦ୍ରବ୍ୟ ନେଇ ସେଠାରେ ପହଞ୍ଚି ଦୁହେଁଯାକ ଆନନ୍ଦରେ ମଦ ମାଂସାଦି ଖାଇ ଆମୋଦ ପ୍ରମୋଦରେ ଲଗିଲେ । ରାଣୀ ନିଜର ଇଚ୍ଛାମତେ ପ୍ରେମାଳାପ ଶେଷ କରି ଘରକୁ ଫେରି ଆସିଲା ।

ତହିଁ ଆରଦିନ ରାଣୀ ସେହିପରି ନିଜର ନିତ୍ୟକର୍ମ ଶେଷ କରି ଭୋଗରାଗ ଦେଇ ନିଜର ସ୍ୱାମୀ ପାଖରେ ପହଞ୍ଚି ବେତ୍ରାଘାତ କରନ୍ତେ ସେ ସହି ନପାରି ଚିତ୍କାର କଲେ ତଥାପି ରାକ୍ଷସୀ ପ୍ରହାର କରି କହୁଥାଏ କପରି ମଜା ! ଏତେ କଷ୍ଟରେ ତୁ ମୋର ବଶ୍ୟତା ସ୍ୱୀକାର କଲୁନାହିଁ, ଏହିପରି କଷ୍ଟଦେଇ ତୋତେ ହନ୍ତସନ୍ତ କରି ବିନାଶ କରିବି । ଏହା କହି ପୁଣି ବେତ୍ରାଘାତ କରନ୍ତେ ରାଜା ଅତି କଷ୍ଟରେ ଚିତ୍କାର କରି ଉଠିଲେ ।

ବସନ୍ତକୁମାର ଲୁଚିକରି ରହି ଏ କଷ୍ଟ ସବୁ ଦେଖୁଥାଏ । ସେ ଆଉ ସହି ପାରିଲ ନାହିଁ । ହଠାତ୍ ସେଠାରେ ଉପସ୍ଥିତ ହୋଇ ଗର୍ଜ୍ଜନ କରି କହିଲ, "ଲୋ ପାପୀୟସି ! ତୋର ମନ ଏ କାର୍ଯ୍ୟରୁ କ୍ଷାନ୍ତ ହେଉ, ନଚେତ୍ ଉପଯୁକ୍ତ ଫଳ ଭୋଗିବୁ "

ରାଣୀ ଏହା ଶୁଣିଲା ସିନା । କିନ୍ତୁ ସେ ତ ରାଗରେ ରଣଚଣ୍ଡୀ ମୂର୍ତ୍ତି ଧରିଥାଏ । ତା' ତରବାରି ଧରି ବସନ୍ତକୁ ମାରିବାକୁ ଦଉଡ଼ି ଆସି କହିଲା, ଆରେ ଦୁଷ୍ଟ ପାପିଷ୍ଠ ! ତୋରି ପରି କେତେ ଲୋକ ଏଠାରେ ପଥର ପାଲଟିଛନ୍ତି । ତୋ ଭାଗ୍ୟରେ ଆଜି ସେଇଆ ଅଛି । ଏହା କହି ତାର ଯାଦୁ ମନ୍ତ୍ର ବିଦ୍ୟା ବଳରେ ଖଣ୍ଡାକୁ ଧରି ଉଞ୍ଚାନ୍ତେ ବସନ୍ତ କୁମାରର ବିଷ୍ଣୁଦତ୍ତ ଖଣ୍ଡା ବଳରେ ତାର ଖଣ୍ଡା ଦି'ଖଣ୍ଡ ହୋଇ ତଳେ ପଡ଼ିଗଲା । ସେଠୁ ସେ କଅଣ କଲା ନା ମନ୍ତ୍ର ପଢ଼ନ୍ତେ ବେତାଳ ଆଦି ଡାକିଣୀମାନେ, ପ୍ରେତମାନେ ଓ ରାକ୍ଷସମାନେ ସେଠାରେ ରୁଣ୍ଡ ହୋଇଗଲେ । ବସନ୍ତର ତରବାରି ତେଜରେ କେହି ପାଖକୁ ଭରସି ଯାଇ ପାରିଲେ ନାହିଁ । ଏହି ସମୟରେ ସୁଦର୍ଶନ ଚକ୍ର ସେଠାରେ ପହଞ୍ଚନ୍ତେ ତାହାର ତେଜରେ ସେମାନେ ଜୀବନ ବିକଳରେ ଛିନ୍ନଛତ୍ର ହୋଇ ପଳାଇଗଲେ । ରାଣୀ

ଏହା ଦେଖି ଆବାକାବା ହୋଇଗଲା । ତାର ଶେଷ ମନ୍ତ୍ର ପଢ଼ି ପକାନ୍ତେ ପ୍ରବଳ ପରାକ୍ରାନ୍ତ ରାକ୍ଷସମାନେ ଆସି ପହଞ୍ଚିଗଲେ । ସେମାନେ ଆସନ୍ତେ ସୁଦର୍ଶନ ଚକ୍ର ଗୋଟି ଗୋଟି କରି ସେମାନଙ୍କୁ ବିନାଶ କରିଦେଲା । ବାକି ଯାହା ଥିଲେ ସେମାନେ ରାଜା ପୁଅର ଖଡ଼୍‌ଗରେ ବିନାଶ ହେଲେ । ସେଠୁ ରାଣୀ ନିଜର ଶକ୍ତିମତେ ଯେତେ ଯାହା କଲା କୌଣସି ମନ୍ତ୍ର ଆଉ କାଟିଲା ନାହିଁ ।

ବସନ୍ତ କୁମାର ଆଉ ସମ୍ଭାଳି ନ ପାରି ରାଣୀକି ପାଟ ଡୋରରେ ଜବରଦସ୍ତ ବାନ୍ଧିପକାଇ ଚାବୁକରେ ପିଟିବାକୁ ଲାଗିଲା । ରାଣୀ ତ ପିଲାଦିନୁ ମାଡ଼ କେମିତି ଧୂଆଁଦିଆ ଲାଗେ ଜାଣି ନ ଥିଲା, ଫଟ୍‌ଫଟ୍ ଚାବୁକ ମାଡ଼ରେ ବିକଳ ହୋଇ କହିଲା—"ମୋତେ ରକ୍ଷାକର ତୁମ୍ଭେ ଯାହା କହିବ ତାହା କରିବି ।" ସେଠୁ ବସନ୍ତ କୁମାର କହିଲେ ପ୍ରଥମେ ତୋର ସ୍ୱାମୀକୁ ମୁକ୍ତ କରିଦେ । ସେଠୁ ସେଇ ଘରେ ଧଳା ଫୁଲ କଳା ଫୁଲ ମନ୍ତ୍ରି ରଖିଥିଲା । ଧଳା ଫୁଲକୁ ଶୁଙ୍ଘାଇ ଦେଇ ମନ୍ତ୍ରପାଣି ସିଞ୍ଚି ଦିଅନ୍ତେ ତାର ସ୍ୱାମୀ ନିଜର ପୂର୍ବ ଦେହ ପାଇ ଉଠିବସିଲା ।

ସେଠୁ ବସନ୍ତ କୁମାର କହିଲା, "ତୁ ରାକ୍ଷସୀ ! ଏ ଦେଶଟାଯାକ ପଥର, ମାଛ ପୋଖରୀ, ପ୍ରାନ୍ତର କରି ରଖି ସେହି ଅନାର୍ଯ୍ୟ ସଙ୍ଗରେ ମଜଜରେ ମାତିଛୁ । ଏମାନଙ୍କୁ ସବୁ ଉଦ୍ଧାର କର ।" ଏହା କହି ସଟାସଟ୍ ଚାବୁକ ଲଗାନ୍ତେ ମରିଗଲି, ମରିଗଲି, ରକ୍ଷାକର, ରକ୍ଷାକର ମୁଁ ସମସ୍ତଙ୍କୁ ଉଦ୍ଧାର କରିଦେଉଛି ବୋଲି କହିଲା । ଏ ଯେଉଁ ଧଳାଫୁଲ ଦେଖୁଛ ଏ ଫୁଲକୁ ଧୋଇ ଏହି ପାଣିକୁ ସବୁଠାରେ

ସିଞ୍ଚିଦେଲେ ସମସ୍ତେ ନିଜ ନିଜର ପୂର୍ବ ଦେହ ପାଇ ଉଠି ଆସିବେ । ବସନ୍ତକୁମାର ସେ ଫୁଲକୁ ସେ ଦେଶର ରାଜାଙ୍କୁ ଦେଇ କହିଲେ, ଏ ଫୁଲକୁ ନେଇ ଧୋଇ ଏପାଣି ରାଇଜଯାକରେ ସିଞ୍ଚି ଦିଅ । ରାଜା ଫୁଲ ନେଇଗଲେ, ତାକୁ ଧୋଇ ଯେମିତି ସବୁଆଡ଼େ ପାଣି ସିଞ୍ଚିଦେଇଛନ୍ତି ଅନାଉଁ ଅନାଉଁ ସମସ୍ତ ପ୍ରଜା ସୈନ୍ୟସାମନ୍ତ, ସେନାପତି ମନ୍ତ୍ରୀ, ପରିଷଦ ନିଜ ନିଜ ଦେହପାଇ ଉଠିବସିଲେ । ସେ ପୋଖରୀ କୂଆଡ଼େ ଯାଇ ପୂର୍ବପରି ନଗର, ଗ୍ରାମ, କୋଠାବାଡ଼ି ସବୁ ଦେଖାଗଲା । କୋଳାହଳରେ ଦେଶ ଫାଟିପଡ଼ିଲା । ରାଜା କହିଲେ ସମସ୍ତେ ସ୍ତ୍ରୀ ପୁରୁଷ ଆମ ନଅର ପାଖକୁ ଆସ । ଦେଖିବ ମୋର ରାଣୀ ମାୟାବିନୀ ରାକ୍ଷସୀ ଦେଶଟାଯାକ ଉଚ୍ଛନ୍ନ କରିଥିଲା । ଆଜ ବସନ୍ତକୁମାର ମହାରାଜାଙ୍କ ଅନୁଗ୍ରହରୁ ରକ୍ଷା ପାଇଅଛୁ ।

ପ୍ରଜାପାଟକ, ପାତ୍ର ମନ୍ତ୍ରୀ ଯେ ଯେଉଁଠି ଥିଲେ ସ୍ତ୍ରୀ ପୁରୁଷ ସମସ୍ତେ ଆସି ନଅର ପାଖରେ ହାଜର । ବସନ୍ତ କୁମାର ରାଣୀକୁ ବନ୍ଧରେ ରଖିଅଛନ୍ତି ଓ ନିଜେ ଜଗିଅଛନ୍ତି । ସେଠୁ ବସନ୍ତକୁମାର କଅଣ କଲେନା ଛୁଣ୍ଡା ଯୋଚା, ଶାଗୁଣା ମଳ ଅଣାଇ ରାଣୀକି ଜବରଦସ୍ତି ପିଆଇଦେଲେ । ତହୁଁ ବସନ୍ତ କୁମାର ରାଣୀର ଗୋଡ଼ ହାତ ବାନ୍ଧି ତାକୁ ରାଜାଙ୍କ ଜିମା ଦେଇ ନିଜେ ଘୋଡ଼ାରେ ଚଢ଼ି ସେହି ପର୍ବତ ପାଖକୁ ଗଲେ ।

ବସନ୍ତକୁମାର ସେ ଅନାର୍ଯ୍ୟ ରାକ୍ଷସକୁ ଦେଖି ତାକୁ ଯୁଦ୍ଧରେ କାବୁକରି ତାର ହାତ ଗୋଡ଼କୁ ବାନ୍ଧି ତାକୁ ଘୋଷାରି ଘୋଷାରି ନଅରରେ ପହଞ୍ଚିଲେ । ରାଣୀ ଏହା ଦେଖି ତଟସ୍ଥ । ରାଜ୍ୟ ଲୋକ ମାନେ ଏସବୁ ଦେଖି କାବା ହେଉଥାନ୍ତି ।

ଏହି ସମୟରେ ବସନ୍ତକୁମାର ରାଜାଙ୍କୁ ଓ ତାଙ୍କର ପାତ୍ରମନ୍ତ୍ରୀ ପ୍ରଜାମାନଙ୍କୁ ଡାକି କହିଲେ, ତୁମ୍ଭେମାନେ ସମସ୍ତେ ଦେଖ—ତୁମ ଦେଶର ରାଣୀ ଏହି କଦର୍ଯ୍ୟକାୟ ଅନାର୍ଯ୍ୟର ପ୍ରେମରେ ପଡ଼ି ତୁମର ଓ ସାରା ଦେଶଟାକୁ ମଶାଣିରେ ପରିଣତ କରିଥିଲା । ଏହିମାନଙ୍କୁ କେଉଁପରି ଦଣ୍ଡଦେବା ଉଚିତ ତାହା ଆପଣମାନେ ଓ ତୁମର ରାଜା ବିଚାର କରିକହନ୍ତୁ ।

ଯେଉଁ ରାଜପୁତ୍ରମାନେ ଉଦ୍ଧାର କରିବାକୁ ଆସିଥିଲେ ସେମାନେ ଏ ସବୁ ଘଟଣା ଦେଖି ବସନ୍ତ କୁମାରଙ୍କୁ ଧନ୍ୟ ଧନ୍ୟ କଲେ ।

ପ୍ରଜାମାନେ ପାତ୍ରମନ୍ତ୍ରୀ ଏହା ଶୁଣି ସମସ୍ତେ ନୀରବ ରହିଲେ । ସେମାନଙ୍କର ରାଜା କହିଲେ ଏମାନଙ୍କୁ ଜୀବନରେ ରଖିବା ଉଚିତ ନୁହେଁ । ଶୂଳରେ ବସାଇ ଏମାନଙ୍କର ପ୍ରାଣ ନାଶ କରାଯାଉ । ରାଜାଙ୍କର ଆଜ୍ଞାମତେ ରାଣୀ ଓ ରାଣୀଙ୍କର ପ୍ରିୟତମ ଅନାର୍ଯ୍ୟ ରାକ୍ଷାସକୁ ଶୂଳଆପଦାରେ ନେଇ ଶୂଳ ଦିଆଗଲା ।

ଅନ୍ୟାନ୍ୟ ଦେଶର ରାଜା ଓ ରାଜକୁମାରମାନେ ବିଦାୟ ନେଇ ନିଜ ନିଜ ଦେଶକୁ ଗଲେ । ବସନ୍ତ କୁମାରକୁ ଧନ୍ୟ ଧନ୍ୟ କହି କୋଟି କୋଟି ଦଣ୍ଡବତ କଲେ ।

ସେ ଦେଶର ରାଜା ସହିତ ବସନ୍ତ କୁମାର କିଛିଦିନ ରହି ଦୁହେଁ ଯାଇ ବସନ୍ତ କୁମାରଙ୍କ ଦେଶକୁ ଆସିଲେ । ରାଜା ଆସିବା ଶୁଣି ପାତ୍ରମନ୍ତ୍ରୀ ସୈନ୍ୟସାମନ୍ତ ଖଣ୍ଡେଦୂରରୁ ପାଛୋଟିଆଣିଲେ । ଆନନ୍ଦ ଉତ୍ସବ ଲାଗିଲା । ପ୍ଲକ୍ଷ ଦେଶର ରାଜା ବସନ୍ତ କୁମାରଙ୍କ କାନ୍ତି

କହନ୍ତେ ସମସ୍ତେ ଧନ୍ୟ ଧନ୍ୟ କହିଲେ । ଧର୍ମର ଜୟ—ପାପର କ୍ଷୟ ପ୍ରମାଣିତ ହେଲା ।

ବସନ୍ତ କୁମାର କଥା ସରିଲା ।
ଯେଝା ଘରକୁ ଯେହୁ ଗ୍ଭଲିଗଲା ॥

ଧର୍ମେ ଜୟ ପାପେ କ୍ଷୟ ହୁଅଇ ।
ଏଥିରୁ ଶିଖିଲ ଭଉଣୀ ଭାଇ ॥

---

# ଚନ୍ଦ୍ରକେତୁ ଓ ସୂର୍ଯ୍ୟକେତୁ

ତାମ୍ରଧ୍ୱଜ ବୋଲି ଜଣେ ରଜା ଥିଲେ । ତାଙ୍କର ରାଜ୍ୟ ପ୍ଲକ୍ଷ ଦ୍ୱୀପରେ । ତାଙ୍କର ଦୁଇଗୋଟି ରାଣୀ ଥିଲେ, ଜଣକ ନାମ ପଦ୍ମାବତୀ ଆଉଜଣକ ନାମ ଲୀଳାବତୀ । ବଡ଼ରାଣୀ ପଦ୍ମାବତୀଙ୍କର ଦୁଇଗୋଟି ପୁଅ । ବଡ଼ ନାମ ଚନ୍ଦ୍ରକେତୁ, ସାନପୁଅ ନାମ ସୂର୍ଯ୍ୟକେତୁ । ବଡ଼ପୁଅ ଚନ୍ଦ୍ରକେତୁକୁ ରଜା ବିବାହ କରାଇଥିଲେ । ଶାଲ୍ମଳୀ ଦ୍ୱୀପର ରଜାଙ୍କର ଝିଅ ଚନ୍ଦ୍ରାବତୀ ସାଙ୍ଗରେ ଚନ୍ଦ୍ରକେତୁର ବିବାହ ହୋଇଥିଲି, ସାନଭାଇ ବିବାହ କରି ନଥିଲି ।

ଦିନେ ତାମ୍ରଧ୍ୱଜ ସୈନ୍ୟସାମନ୍ତ ନେଇ ଶିକାରକୁ ଗଲେ । ବଡ଼ପୁଅ ଚନ୍ଦ୍ରକେତୁକୁ ଡାକି କହିଲେ—ମୁଁ ଶିକାରକୁ ଯାଉଛି, ନଅରର ଭାର ତୋ ଜିମା ରହିଲି । ତୁ ପ୍ରତ୍ୟେକ ବିଷୟରେ ଖବର ରଖିଥିବୁ । ଏହା କହି ରଜା ଚାଲିଗଲେ ।

ସାନରାଣୀ ଗୋଟିଏ ଅନ୍ୟ ପୁରୁଷ ସାଙ୍ଗରେ ଗୋପନରେ ପାପ ପ୍ରଣୟ କରନ୍ତି । ଏ କଥା ରଜା ଜାଣିପାରନ୍ତି ନାହିଁ । ରଜା ତ ଶିକାରକୁ ଯାଇଛନ୍ତି—ରଜାଙ୍କ ସାନପୁଅ ନଅର ଭିତରେ ବୁଲୁଥାଏ ବୁଲୁ ବୁଲୁ ସାନମାଆର ଘରଆଡ଼କୁ ଗଲା । ସାନପୁଅଆସୁଛି ବୋଲି ସାନରାଣୀ ଜାଣେ ନାହିଁ । ସେ ତାର ଉପପତି ସଙ୍ଗେ ଥଟ୍ଟା ମଜା କଥାବାର୍ତ୍ତା ହେଉଥାଏ । ସୂର୍ଯ୍ୟକେତୁ ଏ ସବୁ ଦୂରରୁ ଦେଖି ରାଗରେ ଖଣ୍ଡା ଧରି ଯାଆନ୍ତେ ସେ ପାପୀ ଏହା ଦେଖି ସେଠାରୁ ପଳାଇଗଲା । ରାଣୀ ଦେଖନ୍ତି ତ ସାନପୁଅ ରାଗରେ ଦଉଡ଼ୁଛି ।

ରାଣୀ ପୁଅର ଏ ଅବସ୍ଥା ଦେଖି ଡରିଗଲେ । ସାନପୁଅ ପଢ଼ାଣ୍ଡ ସାନ ମାଆକୁ ନାନାଦି ଭର୍ତ୍ସନାକରି ଗାଳିଦେଲେ । ବଡ଼ଭାଇଙ୍କ ଓ ନିଜ ମାଆକୁ ଏକଥା କହନ୍ତେ ସମସ୍ତେ ଆସି ଗାଳିମନ୍ଦ କଲେ । ମାନବର୍ଣୀର ଅପମାନରେ ମୁହଁ କଳା ପଡ଼ିଗଲା । ତାପରେ ଭାବିଲା ରଜା ଆସି ଶୁଣିଲେ ମୋର ସବୁ ସରିଯିବ, କଅଣ କରିବ । ଏହି କଥା ଭାବ ତାଙ୍କର ବିଶ୍ୱାସୀ ଦାସୀକି ଡାକି କହିଲେ, "ତୁ ତ ମୋର ଏକମାତ୍ର ଏଠାରେ ସାହାଭରସା—ଏ ବିପଦରେ କରିବା କଅଣ ?" ଦାସୀ କହିଲା, "ସାଆନ୍ତାଣୀ ! ଏଇ ଘରର କଥାକୁ ଏତେ ଡରିଯାଉଛ । ରଜା ଆସିଲାବେଳକୁ ତୁମ୍ଭେ ଆପ୍ଣ ଅଳଙ୍କାର କାଢ଼ି ଫୋପାଡ଼ ଦେଇ ତଳେ ମୁହଁମାଡ଼ ଶୋଇଥିବ । ରଜା ଆସି ଉଠାଇଲେ କାନ୍ଦି କାନ୍ଦି କହିବ ମୁଁ ଆଜ ଏ ଜୀବନ ରଖିବ ନାହିଁ । ତୁମ ସାନପୁଅ ମୋ ନଅରକୁ ଆସି ମୋ ଖଟ ଉପରେ ବସିଲା । ମୋ ଉପରେ ଅତ୍ୟାଚାର କରିବାକୁ ବସନ୍ତେ ମୁଁ ପାଟି କରିବାରୁ ଦାସୀ ଦଉଡ଼ି ଆସି ଗାଳିଦେବାରୁ ଏଠାରୁ ପଳାଇଗଲା । ଏମନ୍ତ ଅତ୍ୟାଚାରୀ ପୁଅ ମୁହଁକୁ ଚାହିଁବା ଉଚିତ ନୁହେଁ । ମୁଁ ବଡ଼ପୁଅକୁ ଡାକି ଏକଥା କହନ୍ତେ ସେ ସାନଭାଇକି ଡାକି ପଚାରିଲା । ସାନଭାଇ କଅଣ କହିଲା, ଓଲଟି ମୋତେ ଗାଳି ଫଜିତ କଲା । ଏକଥା କହି, ମୋତେ ସାକ୍ଷୀ ମାନିଲେ ମୁଁ ଆସି ଏକଥା ରଜାଙ୍କୁ କହିବ ଯେ ଆଜ ଅବିଶ୍ୱାସ କରିବେନାହିଁ ।" ଏ ବିଷ୍ଣୁରଟି ସାନରାଣୀ ମନକୁ ବେଶ୍ ପାଇଗଲା । ସେ ଦାସୀର କହିବାମତେ କଲା ।

ରଜା ଶିକାରରୁ ଫେରି ଯେତେବେଳେ ସାନରାଣୀ ପୁରକୁ ଗଲେ, ଦେଖିଲେ ରାଣୀ ଆପ୍ଣ ଅଳଙ୍କାର ଫୋପାଡ଼ ଦେଇ ତଳେ ମୁହଁମାଡ଼ ଶୋଇ କାନ୍ଦୁଛି । ରଜା ଯାଇ ବହୁତ ବୁଝାବୁଝି କରି

କହନ୍ତେ ରାଣୀ ଉଠି କହିଲା ମୁଁ ଆଜ ଏ ଜୀବନ ରଖିବ ନାହିଁ । ତୁମର ସାନପୁଅ ଆସି ମୋ ଉପରେ ଅତ୍ୟାଚାର କରିବାକୁ ବସନ୍ତେ ମୁଁ ଡାକପକାଇଲି । ମୋର ଡାକ ଶୁଣି ଦାସୀ ଦଉଡ଼ି ଆସିବାରୁ ସେ ମୋର ଘରଭିତରୁ ପଳାଇଗଲା । ମୁଁ ଏ କଥା ବଡ଼ପୁଅକୁ କହନ୍ତେ ସେ ମଧ୍ୟ କିଛି ନ ବୁଝି ଓଲଟି ମୋତେ ଗାଳିଦେଲା । ରାଜା ଦାସୀକି ଡାକି ଏକଥା ପଚାରନ୍ତେ ସେ ମଧ୍ୟ ଏକଥା କହିଲା । ରାଜା ଏକଥା ଶୁଣି ରାଗରେ ଜର୍ଜ୍ଜର । କହିଲେ, ଯୋଉ ପୁଅ ମା' ପ୍ରତି ଏପରି ବ୍ୟବହାର କରେ, ସେପରି ପାପୀ ପୁଅକୁ ଏ ରାଜ୍ୟରୁ ବାହାର କରିଦେବା ଉଚିତ । ଆଚ୍ଛା ରାଣୀ ମୁଁ ଭାବୁଛି ସେ ଦୁ'ଭାଇଙ୍କୁ ଏ ରାଜ୍ୟରୁ ବାହାର କରିଦେବା । ଏହା ଶୁଣି ରାଣୀ କହିଲା ମୋ ବିଚାରରେ ତାଙ୍କୁ ଜୀବନରେ ରଖିବା ଉଚିତ ନୁହେଁ । ମୁଁ ପ୍ରତିଜ୍ଞା କରୁଛି ତୁମ୍ଭେ ତାଙ୍କ ମୁଣ୍ଡ ହଣାଇ ମୋତେ ରକ୍ତ ନ ଦେଖାଇଲେ ମୁଁ ଆଜ ଏ ପ୍ରାଣ ରଖିବ ନାହିଁ । ରାଜା କହିଲେ ଆଚ୍ଛା ତାହାହିଁ ହେବ । ଏ କଥା ରାଣୀକି କହି ରାଜା ଦୁ'ପୁଅଙ୍କୁ ଡକାଇନେଲେ । ଦୁଇପୁଅ ପହଞ୍ଚନ୍ତେ ରାଜା କହିଲେ ମୁଁ ଶୁଣିଲି ତୁମ୍ଭେ ସାନ ରାଣୀ ପ୍ରତି ଅତ୍ୟାଚାର କରିବାକୁ ବସିଥିଲ, ମୁଁ ତାର ପ୍ରମାଣ ପାଇଛି । ଏହି ଦୋଷରୁ ମୁଁ ତୁମ୍ଭ ଦୁଇ ଭାଇଙ୍କି ପ୍ରାଣଦଣ୍ଡ ଦେଲି । ଏହା କହି ହନ୍ତକକୁ ଡକାଇ କହିଲେ ଏ ଦୁଇଭାଇଙ୍କି ନେଇ ଶୁନଆପଦାକୁ ଯା, ସେଠାରେ ଏ ଦୁହିଁଙ୍କର ମୁଣ୍ଡ କାଟି ଦେଇ ରକ୍ତ ଆଣି ଦେଖାଇଲେ ସାନ ରାଣୀ ମନ ଶୋଷ କରିବେ । ହନ୍ତକ ବିଚାରର ରୁଚି କଅଣ, ସେ ତ ହୁକୁମର ଚାକର ।

ହନ୍ତକ ଦୁଇ ପୁଅଙ୍କୁ ନେଇ ଶୂନଆପଦାକୁ ଗଲାବେଳେ ମନ୍ତ୍ରୀ କହିଲେ—ଆରେ, ମୋ କଥା ଶୁଣିଯା । ରାଜା ତ ନ ବୁଝି ହୁକୁମ ଦେଇଛନ୍ତି—ତୁ ଜାଣୁ, ସାବତମାଆ କପରି କୌଶଳ କରି ପିଲା

ଦୁହିଁଙ୍କ ମାରିବ ଏଇ ଫିକର କରିଛି—ତୁ ମୋଠାରୁ ଶହେ ସ୍ୱର୍ଣ୍ଣ-ମୁଦ୍ରା ବକ୍‌ସିସ ପାଇବୁ । ପିଲ ଦୁହିଁଙ୍କୁ ନ ମାରି ଅନ୍ୟ ଗୋଟିଏ ପଶୁକୁ ମାରି ରକ୍ତ ଆଣିଦେବୁ । ମନ୍ତ୍ରୀ ଯେତେବେଳେ କହୁଛନ୍ତି ହନ୍ତକ ଭାବିଲା ଠିକ୍ କଥା । ରାମଭଲିଆ ପୁଅକୁ ମାଇପକଥାରେ ଦଶରଥ ଭଳି ରଜା ବଣକୁ ପଠାଇଥିଲେ, ଏ ବା କି ଛାର । ଏହା ଭାବି ପିଲଦୁହିଁଙ୍କୁ ନ ମାରି ଛାଡ଼ିଦେଇ ଅନ୍ୟ ଗୋଟିଏ ପଶୁ ମାରି ଆଣି ରଜାଙ୍କୁ ରକ୍ତ ଦେଖାନ୍ତେ ସାନରାଣୀ ମନୋଶୋଧିକ ଗଲେ ।

ପିଲ ଦୁହେ ବନ୍ଧରୁ ଖଲାସ ହୋଇ ମନ୍ତ୍ରୀଙ୍କ ଘରେ ଲୁଚି କରି ରହିଲେ । ରାତିରେ ନଅର ଭିତରେ ପଶି ବଡ଼ଭାଇ ତାର ସ୍ତ୍ରୀକୁ ଏସବୁ କଥା କହନ୍ତେ ସେ କହିଲା ମୁଁ ଏଠାରେ ଆଉ ରହିବି କାହିଁକି ? ତୁମ ସଙ୍ଗରେ ବଣକୁ ଯିବି । ଏହାପରେ ବାହାର କରି ଦୁଇ ଭାଇ ଭାଉଜ ରାତିଅଧରେ ଚାଲିଗଲେ । ସେତେବେଳେ ଯୁବରାଣୀର ଗର୍ଭ ହୋଇଥାଏ । ରାତି ପାହିଲାବେଳକୁ ସେମାନେ ଏ ରାଜ୍ୟସୀମା ଟପିଯାଇ ଅନ୍ୟ ରାଜ୍ୟରେ ପହଞ୍ଚିଲେ । ସେଠାରେ ଯାଉଁ ଯାଉଁ ଘୋର ଜଙ୍ଗଲ ପଡ଼ିଲା । ଜଙ୍ଗଲ ମଝିରେ ରାଣୀଙ୍କ ଗର୍ଭ ଅବସ୍ଥା ହେତୁ ସେ ଆଉ ଚାଲିପାରିଲେ ନାହିଁ । କହିଲେ, ମୁଁ ଆଉ ଚାଲି-ଯାଇପାରିବି ନାହିଁ । ମୋତେ ଭୟଙ୍କର କଷ୍ଟ ହେଉଛି । ସେଠୁ ଦୁ' ଭାଇଯାକ ବାହାର କରି ଜଙ୍ଗଲ ଭିତରେ ନଈ ନିକଟରେ ଖଣ୍ଡିଏ କୁଡ଼ିଆ ତିଆରି କରି ସେଠାରେ ରହିଲେ । ଜଙ୍ଗଲରୁ ଫଳ ମୂଳ ଗୋଟାଇ ଆଣି ସମସ୍ତେ ଖାଇପିଇ ଆନନ୍ଦରେ ଥାଆନ୍ତି ।

ଏହାପରେ ଚାରିମାସ କଟିଯିବାରୁ ରାଣୀଙ୍କର ଦଶମାସ ହୋଇଗଲା । ଦିନେ ବଡ଼ଭାଇ ଫଳମୂଳ ଆଣିବାକୁ ଓ ସାନଭାଇ କାଠ ଆଣିବାକୁ ଜଙ୍ଗଲକୁ ଯାଇଛନ୍ତି, ଏହିସମୟରେ ରାଣୀଙ୍କର ଘନଘନ ଶୂଳ ଆସିଲା, ରାଣୀ ହତାଶହୋଇ ପଡ଼ିଲେ । ଏତିକବେଳେ

ରାଣୀ ଗର୍ଭରୁ ଗୋଟିଏ ସୁନ୍ଦର ପୁତ୍ର ଜନ୍ମ ହେବାରୁ ରାଣୀ ପୁଅକୁ ଦେଖି ଦେଖି ମୂର୍ଚ୍ଛା ହୋଇଗଲେ । ସେତିକବେଳେ ଗୋଟିଏ ମହାଜନ ସେ ବାଟରେ ଯାଉଥିଲା । ତାର ପୁଅପିଲା କେହି ନ ଥିଲା । ସେ ଗୋଟିଏ ପୁଅ ପକାଣେ ଓହଳ ବିକଳ ହେଉଥାଏ । ସେ ଦେଖିଲା ଗୋଟିଏ ଉତ୍ତମ ସୁନ୍ଦର ପିଲା ଜନ୍ମହୋଇ ପଡ଼ିଛି । ତାଆ ମା ବେହୋସ ହୋଇ ପଡ଼ିଛି । ଏହି ସୁଯୋଗ ଦେଖି ସେ ପିଲାଟିକି ନେଇ ଚାଲିଗଲା । ରାଣୀ ସେତେବେଳେ ବେହୋସରେ ପଡ଼ିଥାନ୍ତି ।

ଏଣେ ବଡ଼ଭାଇ ଚନ୍ଦ୍ରକେତୁ ତ ଫଳପାଇଁ ବଣକୁ ଯାଇଥିଲା । ସେ ଫଳ ଖୋଜି ଖୋଜି ଯେଉଁ ବଣରେ ବୁଲୁଛି, ସେହି ଦେଶର ନାମ ହେଉଛି ସୌରାଷ୍ଟ୍ର । ସେ ଦେଶର ରାଜା ମରିଯିବାରୁ ତାଙ୍କର କେହି ପୁଅପିଲା ନଥିବାରୁ ସେ ଶବ ପଡ଼ିଛି । ରାଜାଘରର ତ ନିୟମ ଅଛି କେହି ଜଣେ ସିଂହାସନରେ ବସି ରାଜାହୋଇ ହୁକୁମ ଦେଲେ ଶବ ସତ୍କାର ହେବ । ତେଣୁ ପାତ୍ର ମନ୍ତ୍ରୀ ସମସ୍ତେ ବିଚାରକରି ସ୍ଥିର କଲେ ହାତୀଶୁଣ୍ଢରେ ସୁନା କଳସ ଦିଅ, ହାତୀ ଯାହା ଉପରେ ସୁନା କଳସ ଢାଳିବ ସେ ରାଜା ହେବ । ଏହା ଠିକ୍ କରି ହାତୀ ଶୁଣ୍ଢରେ ସୁନାକଳସ ଦେଇ ଛାଡ଼ିଦେଲେ । ହାତୀ ପଛରେ ସୈନ୍ୟ-ମାନେ ଗଲେ । ହାତୀ ଜଙ୍ଗଲଭିତରକୁ ଯାଇ ଚନ୍ଦ୍ରକେତୁ ମୁଣ୍ଡରେ ସୁନାକଳସ ଢାଳିଦେବାରୁ ରାଜାଙ୍କ ସୈନ୍ୟମାନେ ତ ସଙ୍ଗରେ ଥିଲେ ସେମାନେ ଚନ୍ଦ୍ରକେତୁକୁ ଧରି ପୋଷାକପତ୍ର ପିନ୍ଧାଇ ହାତୀ ଉପରେ ବସାଇ ନଅରକୁ ନେଇଗଲେ । ଚନ୍ଦ୍ରକେତୁ ଏଣେ ରାଜା ହୋଇ ହୁକୁମ ଦେବାରୁ ପୂର୍ବ ରାଜାଙ୍କର ଶବ ସତ୍କାର ହେଲା । ଚନ୍ଦ୍ରକେତୁ ରାଜାହୋଇ ବଣକୁ ଆସି ଭାଇ ଭାଉଯାକୁ ଖୋଜନ୍ତେ ସେଠାରେ ତାଙ୍କୁ ପାଇଲାନାହିଁ । ସେଠୁ ଦୁଃଖିତ ମନରେ ଥାଏ ।

ଏଣେ ସାନଭାଇ ତ କାଠପାଇଁ ଯାଇଅଛି । ସେ ଯାଉଁ ଯାଉଁ ଦଳେ ମାୟାକନ୍ୟା ସେ ବଣରେ ଥିଲେ । ସେମାନେ ଭାରି କମିଆ ଜାଣନ୍ତି । ସେମାନେ ଏ ଟୋକାର ସୁନ୍ଦର ରୂପ ଦେଖି କାମରେ ମୋହିତ ହୋଇ ଗୋଟିଏ କଳାଫୁଲ ଟୋକାକୁ ଶୁଙ୍ଘାଇ ଦିଅନ୍ତେ ଟୋକା ମେଣ୍ଢା ହୋଇଗଲା । ସେଠୁ ସେମାନେ ଟୋକାକୁ ସଙ୍ଗରେ ନେଇ ତାଙ୍କ ରହିବା ଜାଗାକୁ ଚାଲିଗଲେ । ଦିନରେ ମେଣ୍ଢା କରନ୍ତି, ରାତିହେଲେ ଭେଣ୍ଡାକରି ନିଜ ନିଜର କାମ ଲାଳସା ତୃପ୍ତ କରନ୍ତି । ସାନଭାଇ ମେଣ୍ଢା ହୋଇରହିଲା ।

କେତେବେଳକେ ରାଣୀର ଚେତନା ହେବାରୁ ସେ ଦେଖିଲା ପୁଅ ନାହିଁ, ଗେରସ୍ତ ନାହିଁ, କି ଦିଅର ନାହିଁ । ମନେ ମନେ ଭାବିଲା, କେହି ନ ଥିବାରୁ ଛୁଆଟିକୁ ବାଘ ନେଇଗଲା । ଏହା ଭାବି କାନ୍ଦି ବୋବାଇ ସ୍ୱାମୀ ଓ ଦିଅରକୁ ଖୋଜିବାକୁ ଗଲା । କାନ୍ଦିକରି ଯାଉଥାଏ । ବାଟରେ ଜଣେ ଲୋକକୁ ଦେଖିଲା । ତା ଆଗରେ ନିଜର ସମସ୍ତ ଦୁଃଖ ହାଲ କହନ୍ତେ ସେ ଲୋକର ଭାରି ଦୟା ହେଲା । ତାର ନାମ ସୁବାହୁ ସିଂହ । ତାର ଭାରିଯା, ପୁଅ, ଝିଅ ବାପ ମା କେହି ନଥାଏ । ସେ ନିଜେ ଦୁଃଖ କରି ଖଟି ଯାହା ଆଣେ ସେଥିରେ ଚଳେ । ହେଲେ ଲୋକଟି ଭାରି ଦୟାବନ୍ତ । ସେ ରାଣୀର କଷ୍ଟ ଶୁଣି ସହି ନ ପାରି କହିଲା, ମା ତୁ ମୋର ଆଜିଠାରୁ ଧର୍ମଝିଅ ହେଲୁ, ତୁ ଚାଲ ମୋ ଘରେ ରହିବୁ । ରାଣୀ ଅନ୍ୟ ଉପାୟ ନ ପାଇ ତା ସଙ୍ଗରେ ଯାଇ ତାର ଘରେ ରହିଲା । ରାଣୀ ରହିଲା ଦିନଠାରୁ ତାର ରୋଜଗାର ଭଲହେଲା । ଦୁହେଁଯାକ ଖୁସିରେ ଚଳୁଥାଆନ୍ତି ।

ଏହିପରି ଷୋଳ ସତର ବରଷ କଟିଗଲଣି । ରାଜା ଚନ୍ଦ୍ରକେତୁ ଚାରିଆଡ଼େ ଓ ଗ୍ରାମଗ୍ରାମର ଲୋକ ପଠାଇ ଖୋଜାଉଥାନ୍ତି । ହେଲେ କିଛି ସନ୍ଧାନ ପାଉ ନ ଥାନ୍ତି ।

ଚନ୍ଦ୍ରକେତୁର ଯେଉଁ ପୁଅଟି ବଣରେ ହୋଇଥିଲା, ତାକୁ ଆସି ସତର ବରଷ ହେଲଣି । ପୁରା ଜବାନ୍‌ଟୋକା । ଦେଖିବାକୁ ଭାରି ସୁନ୍ଦର । ଯେ ଦେଖିବ ସେ ଲୋଭେଇ ପଡ଼ିବ । ମହାଜନ ଘରେ ସେ ଖୁବ୍ ଖୁସିରେ ଥାଏ ।

ସୁବାହୁ ସିଂହର ଘର ମହାଜନ ଘର ପାଖରେ । ମହାଜନ ସ୍ତ୍ରୀଅଟିର ନାମ ମୋହନସୁନ୍ଦର ହୋଇଥାଏ । ଏହି ମୋହନସୁନ୍ଦର କୋଠାଉପରେ ବୁଲିଲାବେଳେ ରାଣୀର ସୁନ୍ଦର ରୂପ ଦେଖି ଲୋଭେଇ ପଡ଼ିଥାଏ । କିପରି ତାକୁ ପାଇବ ବୋଲି ଦିନ ରାତି ଏହି ଚିନ୍ତା ।

ଦିନେ ମୋହନସୁନ୍ଦର ସୁବାହୁ ସିଂହକୁ ଡାକି କହିଲା, ମୁଁ ଗୋଟିଏ କଥା କହିବି,ମୋକଥା ରଖିବ ତ କହିବ ? ସୁବାହୁ କହିଲା କଅଣ କହୁଛ କୁହ । ଯେବେ ମୋର କରିବାର କଥା ହୁଏ ମୁଁ ତା କରିବି । ତହୁଁ ମୋହନସୁନ୍ଦର କହିଲା, ତୁମର ଯେଉଁ ଝିଅଟି ଅଛି ତାକୁ ଯଦି ଦିନକ ମହାଜନ ମୋତେ ଦେବ ମୁଁ ତୁମକୁ ହଜାରେ ଟଙ୍କା ଦେବି । ଯେତେବେଳେ ଯାହା ଚାହିଁବ ତା ଦେବି । ନିଅ ଏ ସୁନା ଅଳଙ୍କାର, ବନାରସୀ ଶାଢ଼ୀ ତୁମ ଝିଅକୁ ଦେବ ତାକୁ କହି ଠିକ୍ କରିଥିବ, ଆଜ ରାତିରେ ତୁମ ଘରକୁ ଯିବି । ତୁମକୁ ଯେଉଁ ହଜାରେ ଟଙ୍କା ଦେବାକୁ କହୁଛି ବର୍ତ୍ତମାନ ନଗଦ ପାଞ୍ଚଶହ ଟଙ୍କା ନିଅ, ଆଉ ପାଞ୍ଚଶହ ସନ୍ଧ୍ୟାବେଳେ ଦେବି । ଏକଥା କହି ମୋହନସୁନ୍ଦର ଚାଲିଗଲା । ସନ୍ଧ୍ୟାକୁ ତ ଆସିବାର କଥା ।

ସୁବାହୁ ସିଂହ ଟଙ୍କା ଅଳଙ୍କାର ଓ ଶାଢ଼ୀ ନେଇ ଝିଅକୁ ଯାଇ ସବୁ ହାଲଚାଲ କହିଲା । ବହୁ କଷ୍ଟରେ ଝିଅ ଭାବିଲା ମୁଁ ତ ଏହାର ଆଶ୍ରାରେ ଅଛି । ଏହା କଥା ନ ରଖିଲେ ମୋର ତ ଗତିନାହିଁ । ହେ ଧର୍ମଦେବତା ! ତୁ ମୋତେ ଏ ବିପଦରୁ ରକ୍ଷାକର ଏହା କହି ରାଜିହେଲା । କହିଲା ହଉ ମହାଜନ ପୁଅକୁ କହିବ ସେ ଆସିବ ।

ସୂର୍ଯ୍ୟ କେତେବେଳେ ଅସ୍ତ ହେବ ମହାଜନ ପୁଅ ଛଟପଟ ହେଉ-ଥାଏ । ପୋଷାକପତ୍ର ପିନ୍ଧି ସଫାସୁତରା ହୋଇ ଟେରି ଭାଙ୍ଗି ସନ୍ଧ୍ୟା ଗଡ଼ିଗଲାପରେ ଶାଅଶଠିଟଙ୍କା ଧରି ମନଖୁସିରେ ଘରୁ ବାହାରିଗଲା । ବାଟରେ ଆସୁ ଆସୁ ଦେବମନ୍ଦିର ନିକଟରେ ଜଣେ ସାଧୁ ବସିଛନ୍ତି । ଏ ଟୋକା ସାଧୁଙ୍କୁ ଦର୍ଶନ କରି ଗୋଡ଼ତଳେ ପଡ଼ନ୍ତେ ସାଧୁ କଲ୍ୟାଣ କରି କହିଲେ ବାବା ! ଧନବାନ, ଗୋପଲକ୍ଷ୍ମୀ, ପିତା, ମାତା, ଖୁଡ଼ୁତା ଆଦିଙ୍କୁ ପାଇ ଆନନ୍ଦରେ ରହ ।

ବାବାଜୀଙ୍କଠାରୁ ଏହା ଶୁଣି ଟୋକା ପଚାରିଲା, ମୋର ଏ ଯାତ୍ରା ଶୁଭ ହେବ ତ ?

ବାବାଜୀ ଟୋକାର ହାତ କପାଳରେଖା ଦେଖି କହିଲେ ଆରେ ବାବା, ତୁ ଯେଉଁ କାମରେ ଯାଉଛୁ ତା ବଡ଼ ଦୁରୁହକାମ । ମୁଁ ଯୋଗବଳରେ ଯାହା ଦେଖୁଛି, ଯେଉଁ ସ୍ତ୍ରୀଲୋକ ଉପରେ ତୁ ଲୋଭକରି ଆଜ ପାପଆଶା ପୋଷଣ କରିଅଛୁ ସେ ତୋର ନିଜ ଜନ୍ମଦାତ୍ରୀ ମା । ତୁ ତୋର ପୂର୍ବକଥା ଶୁଣ ।

ତୋର ପିତା ପ୍ଲକ୍ଷଦ୍ୱୀପର ରାଜା ତାମ୍ରଧ୍ୱଜଙ୍କ ପୁଅ । ତାଙ୍କର ଦୁଇଟି ରାଣୀ । ବଡ଼ରାଣୀଠାରୁ ତୋର ପିତା ଚନ୍ଦ୍ରକେତୁ ଓ ତୋର ଖୁଡ଼ୁତା ସୂର୍ଯ୍ୟକେତୁ ଜନ୍ମ ହୋଇଥିଲେ । ତୋର ପିତା ବିବାହ କରିଥିଲେ । ତୋର ମାଆ ନାମ ଚନ୍ଦ୍ରାବତୀ । ସାନରାଣୀ ରାଜାଙ୍କୁ

ମନାଇ ତୋର ବାପା ଦାଦାଙ୍କୁ ମରାଇବାକୁ ହୁକୁମ କରିଥିଲା । ମନ୍ତ୍ରୀ କୌଶଳରେ ସେମାନେ ଜୀବନ ଘେନି ରାତାରାତି ତୋ ମାଆକୁ ଘେନି ପଳାଇଆସିଲେ । ସେତେବେଳକୁ ତୁ ଗର୍ଭରେ ଥାଉ । ଛଅମାସ ହୋଇଥାଏ । ସେମାନେ ଆସି ଏହି ଦେଶର ବଣରେ କୁଡ଼ିଆକରି ରହିଥିଲେ । ତୋର ଜନ୍ମ ସମୟରେ ତୋର ପିତା ଫଳ ଆଣିବାକୁ ବଣରେ ବୁଲୁଥିବାବେଳେ ଏ ଦେଶର ରଜା ମରିଯିବାରୁ ହାତୀ ସୁନାକଳସ ନେଇ ତୋ ବାପା ମୁଣ୍ଡରେ ଢାଳନ୍ତେ ଏ ଦେଶ ଲୋକେ ତୋ ବାପାକୁ ଆଣି ଏ ଦେଶରେ ରଜା କଲେ । ଏବେ ମଧ୍ୟ ତୋ ବାପ ଏ ଦେଶର ରଜା ।

ତୋର ଖୁଡ଼ୁତା କାଠ ପାଇଁ ବଣକୁ ଯାଇଥିଲା । ଶିମୁଳି-ପାହାଡ଼ ପାଖରେ ଯେଉଁ ମାୟାବୀମାନେ ଅଛନ୍ତି ସେମାନେ ତୋ ଖୁଡ଼ୁତାକୁ ଦେଖି ତାକୁ ଧରିନେଇ ରଖିଛନ୍ତି । ଦିନରେ ମେଣ୍ଢା କରନ୍ତି ଓ ରାତିରେ ଭେଣ୍ଡାକରି ତା ସହିତ ବିହାର କରନ୍ତି ।

ତୋତେ ତୋର ମାଆ ଜନ୍ମକରି ବେହୋସରେ ପଡ଼ିଥାଏ । ଏ ମହାଜନର ପୁଅପାଟି କିଛି ନାହିଁ । ଏ ତୋତେ ଟେକିଆଣି ପୁଅକରି ରଖିଛି । ତୋର ମାଆ ଚେତନାପାଇ କାହାକୁ ନ ଦେଖି ଖୋଜିବାକୁ ଆସୁ ଆସୁ ଏ ସୁବାହୁ ସିଂହର ଦେଖାହେଲା । ତୋ ମାଆର ଦୁଃଖ ଶୁଣି ଆଶ୍ରାଦେଇ ରଖିଛି । ଆଜିକି ସତରବରଷ ତଳର କଥା । ତୁ ତୋର ମାଆକୁ ନ ଚିହ୍ନି ଏପରି ପାପକର୍ମ କରିବାକୁ ଯାଉଛୁ । ଭୟ କରନାହିଁ, କଲ୍ୟାଣ କରୁଛି, ଯା ମାଆ ସଙ୍ଗେ ଦେଖାକରି ତୋ ପରିଚୟ ଦେ । ତହୁଁ ରଜାଙ୍କ ପାଖକୁ ଯାଇ ତାଙ୍କୁ ପରିଚୟ ଦେଇ ମା' ଖୁଡ଼ୁତାଙ୍କୁ ଉଦ୍ଧାରକର । ଏହା ଶୁଣି ଟୋକା ନିସ୍ତବ୍ଧ ହେଲା ।

ସେଠୁ ମୋହନସୁନ୍ଦର ନିଜ କାନ ମୋଡ଼ିହୋଇ ଚଟକଣା ମାରିହୋଇ ନିଜର ଦୋଷ ସକାଶେ ଅନୁତାପ କରି, ଗୁଡ଼ି ଘଣ୍ଟାକ ପରେ ସୁବାହୁ ସିଂହର ଘରେ ପହଞ୍ଚିଲା । ସୁବାହୁ ମହାଜନ ପୁଅକୁ ଦେଖି ଆଦରକରିନେଲା । ମହାଜନ ପୁଅ ବାକି ପାଞ୍ଚଶହ ଟଙ୍କା ସୁବାହୁକୁ ଦେବାରୁ ସୁବାହୁ ଝିଅକୁ କହିଲା ମହାଜନ ପୁଅ ଆସିଲାଣି ତାକୁ ତୁ ଆଦର କରିବୁ ଏହାକହି ମହାଜନ ପୁଅକୁ ରାଣୀ ଥିବା ଘରକୁ ଦେଇ ନିଜେ ଗୁଲିଆସିଲା ।

ରାଣୀ ଧର୍ମଦେବତାଙ୍କୁ ମନେ ମନେ ସ୍ମରଣ କରୁଥାଏ । ହେ ଭଗବାନ ! ଏ ବିପଦରୁ ମୋତେ ରକ୍ଷାକର । ଏହି ସମୟରେ ମୋହନସୁନ୍ଦର ଘରଭିତରକୁ ପଶିଆସି ରାଣୀକୁ ଦେଖି କହିଲା ମା ମୋର ଦୋଷ ଖଣ୍ଡନ କର । ଏହା କହି ସେ ଗୋଡ଼ଧରି ପଡ଼ିଯାଇ କାନ୍ଦିବାକୁ ଲାଗିଲା । ରାଣୀ ଏହାଦେଖି ଆବାକାବା, କେତେବେଳେ ମହାଜନ ପୁଅକୁ ବୁଝାଇ ତାକୁ ଉଠାଇ କହିଲେ ବାପା, ତୁ ଏପରି ଅଥୟ ହେଉଛୁ କାହିଁକି ? କଥା କଅଣ କହ । ମହାଜନ ପୁଅ ସବୁକଥା କହିଯାନ୍ତେ ରାଣୀ ପୁଅକୁ କୋଳରେ ଧରି କାନ୍ଦି ପକାଇଲେ । ମୋହନସୁନ୍ଦର କହିଲା ମା ଆଉ କାନ୍ଦନାହିଁ । ମୁଁ ଯାଉଛି ରଜାଙ୍କୁ ସମସ୍ତକଥା କହି ତୋତେ ଏଠାରୁ ନେଇଯିବି । ଏହାକହି ଟୋକା ମା'ର ଗୋଡ଼ତଳେ ପଡ଼ି ବିଦାୟ ନେଇ ଗୁଲିଗଲା ।

ତହିଁଆରଦିନ ସକାଳେ ମହାଜନକୁ କହିଲା, ବାପା ମୋତେ କିଛି ଭେଟି ଜିନିଷ ଠିକ୍ କରିଦିଅ । ମୁଁ ଯାଇ ଏ ଦେଶର ରଜାଙ୍କୁ ସାକ୍ଷାତ କରିବି । ଏହା କହିଲାକ୍ଷଣି ମହାଜନ ଅନେକ ପ୍ରକାର ଉପହାର ସଜାଡ଼ି କରିଦେଲା । ମୋହନସୁନ୍ଦର ସବୁ ଉପହାର ନେଇ ରଜାଙ୍କ ଦର୍ଶନକୁ ଗଲା । ଦ୍ୱାରୀକୁ କହିଲା ତୁ ତୁମ୍ଭମୁରେ ଜଣାଇଦେ, ମହାଜନପୁଅ ସାକ୍ଷାତ କରିବାକୁ ଆସିଛି ।

ଦ୍ୱାରୀ ଯାଇ ରାଜାଙ୍କୁ ଜଣାଇଲା । ରାଜାଙ୍କ ଅନୁମତି ନେଇ ଆସି କହିଲା ରାଜାଙ୍କର ଅନୁମତି ହେଲା ଯାଇ ଦେଖାକର ।

ମୋହନସୁନ୍ଦର ରାଜାଙ୍କୁ ସାକ୍ଷାତ କରି ଉପହାର ଦେଲା ଏବଂ ଗୋଡ଼ଧରନ୍ତେ ରାଜାଙ୍କର ଦେହରେ ଇଲେକ୍‌ଟ୍ରିକ କରେଣ୍ଟଭଳି ଶକ ଲାଗିଲା । ରାଜା ମୋହନସୁନ୍ଦରକୁ ତତ୍‌କ୍ଷଣାତ ଉଠାଇ ଦେଖିଲେ ନିଜର ଆକୃତି ସଙ୍ଗେ ମୋହନସୁନ୍ଦରର ଆକୃତି ମିଳିଯାଉଛି । ଆଜ ମନରେ ଅପୂର୍ବ ଆନନ୍ଦ, ଅପରିସୀମ ସ୍ନେହ ଜାଗ୍ରତ ହେଉଛି । ଟାଣିଆଣି କୋଳରେ ବସାଇବାକୁ ପ୍ରବଳ ଇଚ୍ଛା ହେଉଛି । ମାତ୍ର ଲୋକ ନିନ୍ଦାକୁ ଡରି ଚୂପ୍ ହୋଇ ବସି ମୋହନର ମୁହଁକୁ ଚାହିଁ-ଥାନ୍ତି । ଅକସ୍ମାତ୍ ଆଖିରୁ ପାଣି ଟପ୍‌ଟପ୍ ହୁଥାଏ ।

ଅନେକ ବେଳକେ ମୋହନସୁନ୍ଦର କହିଲା, ତୁମ୍ଭଙ୍କୁ ମୋର କେତେକ କଥା ପଚାରିବାକୁ ଅଛି । ଯେବେ ଦୋଷ ମାର୍ଜନା କରିବେ ତେବେ ଏ ଅଧମ ତୁମ୍ଭରେ କହିବ । ରାଜା କହିଲେ, ତୋତେ ଦେଖିଲାବେଳୁ ବାତ୍ସଲ୍ୟ ସ୍ନେହରେ ମୋର ମନ ଦ୍ରବୀଭୂତ ହେଉଛି । ତୋର ବା କଣ କହିବାର ଅଛି ଶୀଘ୍ର କହ ।

ମୋହନ—ଆପଣ ଜାଣନ୍ତି ପ୍ଲକ୍ଷଦ୍ୱୀପର ରାଜା ତାମ୍ରଧ୍ୱଜ ଥିଲେ । ତାଙ୍କର ଦୁଇଟି ରାଣୀ ଥିଲେ । ବଡ଼ରାଣୀଠାରୁ ଚନ୍ଦ୍ରକେତୁ ଓ ସୂର୍ଯ୍ୟକେତୁ ନାମରେ ଦୁଇଟି ଭାଇ ଜନ୍ମ ହୋଇଥିଲେ ।

ରାଜା—ହଁ, ମୁଁ ଜାଣେ ଏହା ଠିକ୍ କଥା ।

ମୋହନ—ସାନରାଣୀ କୌଶଳରେ ରାଜା ଦୁଇ ପୁଅଙ୍କୁ ମୁଣ୍ଡକାଟ ଶାସ୍ତି ଦେଇଥିଲେ କି ?

ରାଜା—ହଁ, ଠିକ୍ କଥା ।

ମୋହନ ସେ ଦୁଇଭାଇ, ବଡ଼ଭାଇଙ୍କ ସ୍ତ୍ରୀ ଚନ୍ଦ୍ରାବତୀଙ୍କ ନେଇ ଦେଶ ଛାଡ଼ି ବଣକୁ ପଳାଇ ଆସିଥିଲେ କି ?

ରାଜା—ହଁ, ପଳାଇ ଆସିଥିଲେ ।

ମୋହନ—ବଣରେ ପତ୍ରକୁଡ଼ିଆ କରି ରହୁଥିଲେ କି ?

ରାଜା—ହଁ, ରହୁଥିଲେ ।

ମୋହନ—ରାଣୀଙ୍କ ପ୍ରସବ ସମୟରେ ବଡ଼ଭାଇ ଫଳପାଇଁ ଜଙ୍ଗଲକୁ ଆସିଥିଲାବେଳେ ଏ ଦେଶରେ ଆସି ରାଜା ହୋଇଛନ୍ତି କି ?

ରାଜା—ହୋ ଠିକ୍ କଥା । ଆଚ୍ଛା ବାବା କହିଲୁ, ସେ ଯେଉଁ ପୁଅ ଜନ୍ମ ହୋଇଥିଲା ସେ ଅଛି କି ନାହିଁ । ରାଣୀ ଓ ସୂର୍ଯ୍ୟକାନ୍ତ କୁଆଡେ ଗଲେ ?

ମୋହନ—ରାଣୀକି ଏ ଦେଶର ପ୍ରଜା ସୁବାହୁ ସିଂହ ଧର୍ମଝିଅ କରି ରଖିଛି ।

ଆପଣଙ୍କ ସାନଭାଇ ସୂର୍ଯ୍ୟକାନ୍ତକୁ ଶିମୁଳପାହାଡ଼ ପାଖରେ ଥିବା ମାୟାନାରୀମାନେ ମେଣ୍ଢାକରି ବନ୍ଧରେ ରଖିଛନ୍ତି । ଆପଣଙ୍କର ସେହି ହତଭାଗ୍ୟ ପୁତ୍ର ଗ୍ରାମୁଁରେ ଠିଆହୋଇଛି ଯାହାକୁ କି ମହାଜନ ପିଲାବେଳୁ ଗ୍ରେଇ ଅଣିଥିଲା ।

ଏକଥା ଶୁଣି ରାଜା ଉଠିଆସି ପୁଅକୁ କୋଳକୁ ନେଲେ । ସବାର ପଠାଇ ସୁବାହୁ ସିଂହର ଘରୁ ରାଣୀକୁ ଆଣିଲେ । ଅନେକ ଗୁଣିଆମାନଙ୍କୁ ପଠାଇ ମାୟାନାରୀଙ୍କର ମାୟାକାଟି ସାନ ଭାଇଙ୍କ ଆଣିଲେ । ଆନନ୍ଦ କୋଳାହଳରେ ନଅର ପୂରିଉଠିଲା । ସମସ୍ତେ ଏକଥା ଶୁଣି ଧନ୍ୟ ଧନ୍ୟ କଲେ । ମହାଜନକୁ ଦଣ୍ଡ ଦେବାକୁ ବସନ୍ତେ ମୋହନ କହିଲା, ସେ ମୋତେ ପାଳନ କରିଛି, ତେଣୁ ତାର ଅପ୍ରାଧ ମାର୍ଜନା କରି ତାକୁ ଛାଡ଼ିଦିଅନ୍ତୁ ।

ମୋହନର କଥାମତେ ମହାଜନଙ୍କୁ ଛାଡ଼ିଦେଇ ସୁବାହୁ ରାଣୀଙ୍କ ଆଜ୍ଞା ଦେଇଥିବାରୁ ତାଙ୍କୁ ଜମବାଡ଼ ଅନେକ ଦେଲେ ।

ମନ୍ତ୍ରୀ ଜମା ରାଜ୍ୟ ଦେଇ ସମସ୍ତେ ନିଜ ଦେଶକୁ ଆସିଲେ । ତାମ୍ରଧ୍ୱଜ ବୁଢ଼ା ହୋଇଗଲେଣି । ସାନରାଣୀ, ରାଜା ଓ ବଡ଼ରାଣୀଙ୍କୁ ବହୁତ ଅବସ୍ଥା ଦେଉଛି ।

ରାଜା ଛ ପୁଅ ଓ ବୋହୂଙ୍କୁ ଦେଖି ଆବାକ୍ । ବଡ଼ରାଣୀ ପୁଅ ଆସିବା ଶୁଣି ଦଉଡ଼ ଆସିଲେ । ପୁଅ ବୋହୂ ବାପ ମାଆଙ୍କ ଗୋଡ଼ତଳେ ପଡ଼ି ନଅର ଭିତରକୁ ଗଲେ ।

ସାନରାଣୀ ତ ସବୁ ଅକତିଆର କରିଛି । ତାକୁ ଘର ଅକଳ ହେଲା । ସେ ତାର ଉପପତିଙ୍କ ଡାକି ଗୁପ୍ତରେ ମନ୍ତ୍ରଣା କଲେ, ଏମାନଙ୍କୁ ବନ୍ଦୀରେ ରଖିବା ।

ଦିନେ ରାତିରେ ଏମାନେ ଶୋଇବା ଅବସ୍ଥାରେ ସାନରାଣୀ ତରଫରୁ କେତେକ ଦୁଷ୍ଟ ପ୍ରକୃତିର ଲୋକ ଆସି ନଅରକୁ ଘେରାଉ କଲେ । ରାଜାଙ୍କର ଦୁଇଝିଅ ତା ଭିତରେ ଅଛନ୍ତି । ଏମାନେ ଏ କଥା ଜାଣି ହଠାତ୍ କାବା ହୋଇଗଲେ । ତାପରେ ଛ'ଭାଇ ଶୀଘ୍ର ବାହାର କରି ରାଜାଙ୍କ ପାଖକୁ ଯାଇ କହିଲେ, ଆପଣ କଅଣ ହୁକୁମ ଦେଉଛନ୍ତି ଆମ୍ଭେମାନେ ଏଠାରେ ବନ୍ଦୀ ରହିବା ?

ରାଜା କହିଲେ ବାପରେ ମୁଁ ତ ବନ୍ଦୀଭଳି ଅଛି । ମୁଁ କଅଣ କରିବ । ତୁମର କ୍ଷମତା ବଳରେ ତୁମେ ରକ୍ଷାହୁଅ ଓ ମୋତେ ରକ୍ଷାକର । ମୁଁ ସେ ରାକ୍ଷାସୁଣୀ ପ୍ରେମରେ ପଡ଼ି ମୋର ସୁନାର ସଂସାର ଚୂନା କରିଦେଇଛି । ଏତେବଡ଼ ରାଜାହୋଇ କୁକୁର ପରି ପଡ଼ିଛି । ମୁଁ କଅଣ ବା କରିବ ?

ବଡ଼ଭାଇ ଚନ୍ଦ୍ରକେତୁ, ସାନଭାଇ ସୂର୍ଯ୍ୟକେତୁ କହିଲେ, ଆମ୍ଭେ ଜୀବନରେ ଥାଉଁ ଥାଉଁ କ୍ଷତ୍ରୀୟ ହୋଇ ଏ ଅପମାନ ସହିବାଠାରୁ

ମରିବା ପଦ୍ଧର ଗୁଣରେ ଭଲ । ଏହା କହି ଦୁଇଭାଇ ହାତହତିଆର ଧରି ଘୋଡ଼ାରେ ବାହାରି ପଡ଼ିଲେ ।

ସିଂହ ଯେପରି ଛେଳିପଲ ମଧ୍ୟକୁ ଗଲେ ସେହିପରି ଯେତେ ଲୋକ ସହର ଘେରିଥିଲେ, ଏହାଙ୍କ ଶସ୍ତ୍ରାଘାତରେ ଅଧେ ଲୋକ ମରି ତଳେ ପଡ଼ିଗଲେ । ବାକି ସୈନ୍ୟମାନେ ଶରଣ ପଶିବାରୁ ରାଜାପୁଅ ସେମାନଙ୍କଠାରୁ ଅସ୍ତ୍ରଶସ୍ତ୍ର କାଢ଼ିନେଇ ବନ୍ଦୀକଲେ । ସୂର୍ଯ୍ୟକାନ୍ତ ଦେଖିଲା ସାନରାଣୀ ଉପପତି ସହ କୋଠା ଉପରେ ଠିଆହୋଇ ଦେଖୁଛି । ସେ ଘୋଡ଼ା ଝପଟାଇ ସଙ୍ଗେ ସଙ୍ଗେ କୋଠା ଉପରକୁ ଯାଇ ସେ ଦୁର୍ବୃତ୍ତକୁ ଗୋଟିଏ ତଣ୍ଡିଆରେ ତଳେ ପକାଇଦେଲା । ତାର ହାତଗୋଡ଼ ବାନ୍ଧି ସାନରାଣୀକୁ ବାନ୍ଧି ଘୋଷାରି ତଳକୁ ଆଣିଲା ।

ତହିଁଆରଦିନ ରାଜ୍ୟର ସମସ୍ତ ପ୍ରଜାମାନଙ୍କୁ ଡେଙ୍ଗୁରାଦେଇ ଡକାହେଲା । ପାତ୍ର ମନ୍ତ୍ରୀ ଯେଉଁମାନେ ପୁରୁଣା ଥିଲେ ସେମାନେ ଆସିଲେ । ବୁଢ଼ାରଜା ସଭାରେ ବିଜେକଲେ । ସେଠାକୁ ସାନରାଣୀ ସହ ତାର ଉପପତି ଆସିଲା ।

ସମସ୍ତେ ଦୁଇ ଭାଇଙ୍କୁ ଦେଖି ଧନ୍ୟ ଧନ୍ୟ କଲେ । ବୁଢ଼ାରାଜା ନିଜକୃତ ଅନ୍ୟାୟ କାର୍ଯ୍ୟ ହେତୁ ଯୋକ ମୁହଁରେ ଲୁଣ ଦେଲାପରି ବସିଥିଲେ । ଚନ୍ଦ୍ରକାନ୍ତ କହିଲା ବାପା, ଆଉ ପୂର୍ବକଥା ଭାବିବା ଉଚିତ ନୁହେଁ । ସେସବୁ ମନରୁ ପୋଛିଦିଅ । ମନ୍ତ୍ରୀଙ୍କ ସକାଶେ ଯେ ଆମେ ପ୍ରାଣରେ ରହିଲୁ, ଏଥିସକାଶେ ମନ୍ତ୍ରୀଙ୍କୁ ଉପଯୁକ୍ତ ପୁରସ୍କାର ଦିଆଯାଉ ।

ରଜା କହିଲେ ସମସ୍ତେ ବିଚାର କର । ମୁଁ ଆଉ ଏ ରାଜ୍ୟରେ ରହିବି ନାହିଁ । ମୋର ପାଟରାଣୀଙ୍କୁ ସାଙ୍ଗରେ ନେଇ ବାନପ୍ରସ୍ଥ କରିବି । ମୋର ବଡ଼ପୁଅ ରାଜଗାଦିରେ ବସୁ । ଆଜିଠାରୁ ଏହା

ଶୁଣି ବଡ଼ପୁଅ ଚନ୍ଦ୍ରକେତୁ କହିଲା, ମୁଁ ତ ଗୋଟିଏ ଦେଶର ରଜା ହୋଇଛନ୍ତି । ମୋର ସାନ ଭାଇଙ୍କ ଏ ଦେଶର ରାଜ ସିଂହାସନ ଦିଆଯାଉ । ସାନଭାଇ ସୂର୍ଯ୍ୟକେତୁ ସିଂହାସନରେ ବସିବାର ସ୍ଥିର ହେଲା ।

ସାନରାଣୀଙ୍କର ବସ୍ତ୍ରରେ ଶୂଳଆଦଦାକୁ ନେଇ ତାଙ୍କୁ ଶୂଳ ଦେବାର ଠିକ୍ ହେଲା । ସେହି ଅନୁସାରେ ସାନରାଣୀ ଶୂଳ ଚାଇଲେ । ଯେଉଁ ପାପୀ ସାନରାଣୀଙ୍କୁ ଅତ୍ୟାଚାର କରିଥିଲା ତାକୁ ବଡ଼ ଦାଣ୍ଡରେ ଗୋଟିଏ ଖୁଣ୍ଟରେ ବାନ୍ଧି କୁକୁର ଲଗାଇଲେ, ପୁଳା ପୁଳା କରି ମାଂସ କୁକୁର କାମୁଡ଼ିକରି ଖାଇଲା । ଏହିପରି ଭାବରେ ପାପୀମାନଙ୍କୁ ଦଣ୍ଡ ଦେଲେ । ରଜା ବାନପ୍ରସ୍ଥ ଅବଲମ୍ବନ କଲେ । ସୂର୍ଯ୍ୟକେତୁ ସିଂହାସନରେ ବସିଲା । ଚନ୍ଦ୍ରକେତୁ ନିଜ ରାଜ୍ୟକୁ ଫେରି ସେଠାରେ ରଜା ହେଲା ।

ଧର୍ମରେ ଥିଲେ ଧର୍ମ ସବୁ ବିପଦରୁ ରକ୍ଷାକରେ । ଯାହାର ସତ୍ପଥରେ ମନଥାଏ ତାକୁ ଭଗବାନ ପଦେ ପଦେ ରକ୍ଷାକରନ୍ତି ।

—*—

## ଅଜୟ କୁମାର ଓ ଅମରେନ୍ଦ୍ର କୁମାର

ଶ୍ରୀମନ୍ତ ବୋଲି ଗୋଟିଏ ରାଜ୍ୟ ଥିଲା । ସେ ରାଜ୍ୟର ରଜା ସତକେତୁ । ତାଙ୍କର ମନ୍ତ୍ରୀ ସୁବୁଦ୍ଧି ସିଂହ । ରଜା ଓ ମନ୍ତ୍ରୀଙ୍କର ଦୁଇଟି ପୁଅ । ରଜାଙ୍କ ପୁଅର ନାମ ଅଜୟକୁମାର, ଆଉ ମନ୍ତ୍ରୀ ପୁଅର ନାମ ନରେନ୍ଦ୍ରକୁମାର । ବୟସ ଏକ, ଦେଖିବାକୁ ଏକାପରି ଦୁହିଁଙ୍କର ଭରି ମନ ମିଳେ । ଦୁଇଜଣଯାକ ଧର୍ମ ସାକ୍ଷୀ କରି ସଙ୍ଗାତ ବସିଛନ୍ତି । କେହି କାହାକୁ ଛାଡ଼ି କୁଆଡ଼େ ଯାଆନ୍ତି ନାହିଁ । ଏକସାଙ୍ଗରେ ଖାଆନ୍ତି, ଏକାସାଙ୍ଗରେ ଶୁଅନ୍ତି, ମନଇଚ୍ଛା ଖାଇପିଇ ମଉଜ ମଜଲିସ କରି ବୁଲୁଥାନ୍ତି । ରାଜ୍ୟ ଖବର କି ଘରର ହାଲଚାଲ କିଛି ବୁଝନ୍ତି ନାହିଁ । କଥାରେ କହନ୍ତି, ବାପ ଥିଲା ପୁଅ

ସଙ୍ଗରେ ହାରେ ନାହିଁ । ଏ ତ ରଜାପୁଅକୁ ମନ୍ତ୍ରୀପୁଅ, ସ୍ତ୍ରୀଙ୍କର ଖୋଜ କଥାକୁ ପରବା ନ ଥାଏ । ଦିନେ ରଜା ଶୀରକେଶଗ୍ରୀ ପାରଧିକ ବାହାରିଲେ । ରଜାଙ୍କର ବିଦ୍ୟୁଲତା ବୋଲି ଗୋଟିଏ ଝିଅଥାଏ । ରଜା ତାକୁ ଦଣ୍ଡେ ନଦେଖିଲେ ପାଗଳପରି ହୁଅନ୍ତି । ବିଦ୍ୟୁଲତା ସେଦିନ ବାପାଙ୍କୁ କହିଲା ବାପା, ମୁଁ ଆଜ ତୁମ ସଙ୍ଗରେ ଯିବି । ରଜା ସେଥିରେ ଖୁସିହୋଇ ବିଦ୍ୟୁଲତାକୁ ସଙ୍ଗରେ ନେଲେ ।

ରାଜ୍ୟରେ ନାଗରା ଦିଆଗଲା । ଆଜ ପାହାନ୍ତାରୁ ରଜା ପାରଧିକୁ ଯିବେ । ଯେ ଯେଉଁଠି ଅଛ ସମସ୍ତେ ରାତି ଥାକନ୍ତାବେଳେ ଯାଇ ରଜାଙ୍କ ଦୁଆରେ ପହଞ୍ଚିବ । ସକାଳ ହେବାରୁ ରଜା ନିତ୍ୟ-କର୍ମ ଶେଷକରି ବିଦ୍ୟୁଲତାକୁ ଘୋଡ଼ାରେ ବସାଇ ସେହି ଘୋଡ଼ାରେ ନିଜେ ବସି ପାରଧିକ ଗଲେ । ଅରଣ୍ୟ ଭିତରେ ପଶି ସେଠାରେ ସୈନ୍ୟସାମନ୍ତମାନେ ଜଙ୍ଗଲ ଘେରିଆଡ଼ ବୁଲି କେଉଁଠି ଜୀବଜନ୍ତୁ ଅଛନ୍ତି ଖୋଜିଜାଗା ଦେଖୁଥାନ୍ତି ।

ସେ ବଣରେ ଗୋଟିଏ ରାକ୍ଷସୁଣୀ ଥାଏ, ତା ନା ପୂତନା । ତାର ବଳ ଅସୀମ । ସେ ଯେତେବେଳେ ଯେଉଁ ରୂପ ଗୃହ୍ଣିବ ସେ ରୂପ ହୋଇଯିବ ! ସେ ପୂତନା ରାକ୍ଷସୀ ଦେଖିଲା ରଜା ଝିଅକୁ ନେଇ ଶୀକାର କରିବାକୁ ବଣରେ ବୁଲୁଛି । ସେ ଗୋଟିଏ ହରିଣୀ ରୂପ ଧରି ରଜାଙ୍କ ଆଗରେ ଦେଖାଦେଲା । ରଜା ତାକୁ ଦେଖି ଘୋଡ଼ା ଦଉଡ଼ାନ୍ତେ ସେ ପଳାଇଗଲା । ରଜା ତାକୁ ମାରିବେ ବୋଲି ଘୋଡ଼ା ଦଉଡ଼ାଇ ଥାଆନ୍ତି । ରାକ୍ଷସୁଣୀ ମାୟା କରି ରଜାଙ୍କୁ ଅନେକ ଦୂର ନେଇଗଲା । ରଜାଙ୍କର ସୈନ୍ୟମାନେ ଯେଉଁଠି ଥିଲେ ସେଠାରୁ ଅନେକ ଦୂରକୁ ରଜା ବାହାରିଗଲେଣି । ରାକ୍ଷସୁଣୀ ଦେଖିଲା ରଜା ଏକୁଟିଆ ହୋଇଗଲେ । ସେଠୁ ସେ ତା ନିଜରୂପ ଧରି ରଜାଙ୍କୁ ଦେଖାଦେଲା । ରାକ୍ଷସୁଣୀ ତ ବର

ଯାଇଛନ୍ତି ତା ଦେହରେ କିଛି ଅସ୍ତ୍ର ଭେଦବ ନାହିଁ । ରଜା ଯେତେ ଶର ମାରିଲେ ସେ ରାକ୍ଷସୁଣୀ ଦେହରେ ବାଜି ସବୁ ଖସିପଡ଼ି ପଡ଼ିଲା । ଶେଷକୁ ରଜା ବ୍ୟସ୍ତହୋଇ ଘୋଡ଼ା ଉପରୁ କୁଦିପଡ଼ି ଅସୁରୁଣୀ କୁ ହାଣିବାକୁ ଦଉଡ଼ିଲେ । ରଜା ଅସୁରୁଣୀକୁ ଯେତେ ଚୋଟ ମାଇଲେ ତାର କିଛି ହେଲନାହିଁ । ତହୁଁ ରଜା କାବା ହୋଇଗଲେ । ରାକ୍ଷସୁଣୀ ହେଁ ହେଁ ହୋଇ ହସି କହିଲା, ଆରେ ତୋର ପରି କେତେ ରଜା ଆସି ମୋ ହାତରେ ମରିଛନ୍ତି । ତୁ ଏବେ ତୋ ଇଷ୍ଟଦେବ ସୁମରଣା କର, ଆଜ ବର୍ତ୍ତିବୁ ନାହିଁ । ଏହା କହି ଚକଟାଳ ରୂପ ଧରି ରଜାଙ୍କ ମାଡ଼ିବସି ତଣ୍ଟି କଣା କରି ରକ୍ତ ପିଇଗଲା । ରଜାଙ୍କୁ ମାରିସାରି ଝିଅ ପାଖକୁ ଆସି ବିଦ୍ୟୁଲତାକୁ ଧରିନେଲା । ବିଦ୍ୟୁଲତା ବାପାର ମରଣ ଦେଖି ଭେ ଭେ ହୋଇ କାନ୍ଦୁଥାଏ । ଅସୁରୁଣୀ ବୁଢ଼ୀ ବିଦ୍ୟୁଲତାକୁ ନେଇ ନିଜ ପୁରରେ ରଖିଲା । କହିଲା, ଲୋ ଝିଅ, ତୁ ମନରେ କିଛି ଦୁଃଖ ଆଉ କରନା । ତୁ ମୋର ଝିଅ ହେଲୁ । ତୋର ଆଉ କିଛି ଅଭାବ ହେବ ନାହିଁ । ତୁ ଯେତେବେଳେ ଯାହା ଇଚ୍ଛା କରିବୁ, ମୋତେ କହିଲେ ମୁଁ ସବୁ ଆଣି ତୋତେ ଯୋଗାଇ ଦେବ । ଅସୁରୁଣୀର ଘରଟା କିଛି ଶ୍ରେଷ୍ଠ ନୁହେଁ । ସାତ ବଖରା ଘର, ବଡ଼ ଅଗଣା, ଗୃହ ଆଉ୍ଟେ ପାଚେଶି ଘେରା ହୋଇଛି । ବିଦ୍ୟୁଲତା ପ୍ରକୃତିସ୍ଥ ହୋଇ ଦେଖିଲା ଯେ ଦୁଆରଯାକ ହାଡ଼ ଗଦା । ଅସୁରୁଣୀ ନ ଥିଲାବେଳେ ଗୋଟାଏ ଘର ଫିଟାଇଦେଇ ଦେଖେ ତ ଖାଲି ମୁଣ୍ଡଗୁଡ଼ା ଟଙ୍ଗୁଛନ୍ତି । ତାର ଆଉ ବଳ କଅଣ । ସେ ସେଠାରେ ମା ଭଗବତୀଙ୍କୁ ଧ୍ୟାନକରି ରହିଥାଏ । ସକାଳୁ ବିଦ୍ୟୁଲତା ଉଠି ସ୍ନାନ ନିତ୍ୟକର୍ମ ଶେଷକରି ଭଗବତୀଙ୍କର ପୂଜା କରେ । ପୂଜାସାରି ଯାହା ଭଗବତୀଙ୍କ ପାଖରେ କଦଳୀ, ଅମ୍ବ, ସପୁରୀ ଭୋଗ ଦେଇଥାଏ ସେହି ଭୋଗକୁ ଖାଇ ପଡ଼ିରହିଥାଏ । ଅନ୍ୟ ଦିନରେ

ତାର ଦେଖାନାହିଁ, ଦେଢ଼ଶୁର ଭାଇବୋହୂ ସମ୍ବନ୍ଧ । ଅସୁରୁଣୀ ମାଛ ମାଂସ ଖାଇବାକୁ ଯେତେ କହେ ଏ ଖାଏନାହିଁ । ଅସୁରୁଣୀ ମଞ୍ଚରେ ବସି ମା ହିଅଉଳ ଗପସପ ହୋଇ ଅସୁରୁଣୀ ମନକୁ କିଣି ନେଇଥାଏ ।

ସାରଙ୍ଗଗଡ଼ ରାଜା ପଦ୍ମଲାଭ ସେ ମଧ୍ୟ ଏହି ବଣକୁ ଶିକାର କରିବାକୁ ଆସି ଏ ଚଣ୍ଡାକ୍ଷୁଣୀ ରାକ୍ଷସୀ ମୁହଁରେ ପଡ଼ି ମରିଥାନ୍ତି । ତାଙ୍କର ଗୋଟିଏ ବୋଲି ପୁଅ । ତାର ନାମ ଅମରେନ୍ଦ୍ର । ରାଜା ଅନେକ ଦିନଯାଏ ନଅରକୁ ନ ଫେରିବାରୁ ଅମରେନ୍ଦ୍ର ମାଆକୁ କହିଲା, ବାପା ତ ଏ ପର୍ଯ୍ୟନ୍ତ ଫେରିଲେ ନାହିଁ । ମୁଁ ଯାଉଛି ବାପାଙ୍କୁ ଖୋଜି ବାହାର କରିବି । ଟୋକାର ବୟସ କୋଡ଼ିଏ କି ବାଇଶି ହେବ । ସେ ମାଆକୁ ବୁଝାଇ ହାତହତିଆର ନେଇ ବାହାର ଆସିଲା । ବଣରେ ବୁଲି କନ୍ଦ ବକନ୍ଦ ଗୁମ୍ଫା ସବୁ ଜାଗା ଖୋଜି ଖୋଜି ଯାଉଥାଏ । ଏହାପରେ ୧୫ ଦିନ ହୋଇ ଗଲାରୁ ଗେରସ୍ତ କି ପୁଅ କେହି ନଅରକୁ ଫେରିଲେ ନାହିଁ । ରାଣୀ ଭାବିଲେ ସ୍ୱାମୀ ତ ଗଲେ ଫେରିଲେ ନାହିଁ । ପୁଅ ବି ଗଲା ଫେରିଲା ନାହିଁ । ଆଉ ଏ ନିର୍ଲଜ ଜୀବନରେ ମୋର କଅଣ ଦରକାର ଅଛି । ଏହା ଭାବି ଦିନେ କାହାକୁ କିଛି ନ କହି ରାତି ଅଧରେ ନଅରରୁ ବାହାରିଗଲା ।

ଗାରକେଶରୀ ରାଜା ଓ ବିଦ୍ୟୁଲତାଙ୍କୁ ଅପେକ୍ଷା କରି କରି ସୈନ୍ୟମାନେ ନ ପାଇ ଗଡ଼କୁ ଫେରିଗଲେ । କହିଲେ, ରାଜା ଓ ଜେମାଦେଇ କେଉଁଆଡ଼େ ଗଲେ ଆମେ ଖୋଜି ଖୋଜି ପାଇଲୁ ନାହିଁ । ଏହା ଶୁଣି ଆଉ ଉଆସରେ କାନ୍ଦ ବୋବାଳି ପଡ଼ିଗଲା । ପ୍ରଜାମାନେ କାନ୍ଦ କାଟି ଅଥୟ । ଏ ଘଟଣା ଦେଖି ରାଜାଙ୍କର ଅକ୍ଷୟ କୁମାର ତାର ସାଙ୍ଗ ନରେନ୍ଦ୍ର କୁମାରକୁ ଡାକି କହିଲେ, ଦେଖ ମିତ ଏତେଦିନେ ଆମକୁ ଆସି ବିପତ୍ତି ପଡ଼ିଲା । ମୋର ବାପ

ଭଉଣୀକି ନେଇ ଶୀକାର କରିବାକୁ ବଣକୁ ଯାଇଥିଲେ, ଏ ପର୍ଯ୍ୟନ୍ତ ସେମାନେ ଫେରିଲେ ନାହିଁ । ସୈନ୍ୟମାନେ ଫେରିଆସି କହିଲେ ରାଜା ଓ ତେମାକୁ ପାଇଲୁ ନାହିଁ । ତୁମ୍ଭେ ତୁମ୍ଭ ବାପାଙ୍କ ସାଙ୍ଗରେ ରହି ରାଜ୍ୟର ଭଲମନ୍ଦ ବୁଝୁଥାଅ । ମୁଁ ଯାଉଛି ବାପା ଓ ଭଉଣୀକି ଖୋଜିବାକୁ । ପାଇଲେ ନଅରକୁ ଫେରିବ । ଏହା କହି ସମସ୍ତଙ୍କୁ ବୋଧଶୋଧ ଦେଇ ଶୁଭବେଳା ଦେଖି ଘରୁବାହାରିଗଲା ।

ଅକ୍ଷୟକୁମାର ଅନେକ ବାଟ ଗଲା ପରେ ଗୋଟିଏ ନିବିଡ଼ ଜଙ୍ଗଲ ପଡ଼ିଲା, ସେହି ଜଙ୍ଗଲ ବାଟଦେଇ ଯାଉଥାଏ । ଚାରିଆଡ଼କୁ ଅନାଇ ଅନାଇ ଖୋଜ ଖୋଜ ଯାଉଥାଏ । କେତେ ଦୂର ଗଲା ପରେ ଗୋଟିଏ ଠୋଟା ଦେଖିଲା । ସେହି ଠୋଟାର ଗୋଟିଏ ଗଛମୂଳେ ସାଧୁ ଜଣେ ବସିଅଛନ୍ତି । ଏ ଟୋକା ସାଧୁଙ୍କୁ ଦେଖି ଯାଇ ତାଙ୍କ ଗୋଡ଼ତଳେ ପଡ଼ିଲା । ନିଜର ଦୁଃଖହାଲ ସବୁ କହିଲା । ଏହି କଥା ଶୁଣି ସାଧୁ ଅକ୍ଷୟ କୁମାରକୁ କହିଲେ, ଆରେ ବାବା ! ମୁଁ ଯୋଗବଳରେ ଜାଣି ପାରୁଛି ଏହି ବଣ ଆରପାଖରେ ଯେଉଁ ବଣ ଅଛି ସେ ବଣରେ ଗୋଟିଏ ବୁଢ଼ୀ ଅସୁରୁଣୀ ଅଛି ! ସେ ତୋ ବାପାକୁ ମାରି ତୋ ଭଉଣୀକି ନେଇ ତା ଘରେ ରଖିଅଛି । ତୁ ଯେବେ ସେଠାକୁ ଯାଉ ଯାଉ ଜୀବନ ଧେଇ ଫେରିବୁ ନାହିଁ । ତୁ ଏଠାରେ କିଛି ଦିନ ଅପେକ୍ଷା କର, ସମସ୍ତ ଉକ୍ତି ଆମେ କହିଦେବୁ ଯେପରି ତୋର ଭଉଣୀକୁ ତୁ ଦେଖି ପାରିବୁ । ବାବାଜୀଙ୍କଠାରୁ ଏ କଥା ଶୁଣି ରାଜାପୁଅ ବାବାଜୀଙ୍କ ସେବା କରି ସେହିଠାରେ ରହିଲା ।

ସାରଙ୍ଗଗଡ଼ ରାଣୀ ତ ତେରସ୍ତ ପୁଅକୁ ଖୋଜିବାକୁ ନଅରରୁ ଆସି ବଣରେ ବୁଲୁଛନ୍ତି । ସେ ବୁଲି ବୁଲି ଆସି ସେଇ ବାବାଜୀ ମଠରେ ପହଞ୍ଚିଲେ । ବାବାଜୀଙ୍କୁ ଦେଖି ତାଙ୍କ ଗୋଡ଼ତଳେ ପଡ଼ି ନିଜର ଦୁଃଖ ହାଲସବୁ ଜଣାଇଲେ । ରାଣୀଙ୍କର ଦୁଃଖ ଦେଖି

ବାବାଜୀ କହିଲେ ମା ଏ ଜାଗା ବଡ଼ ବିପଦ । ତୁ ତ ଅପୂର୍ବ ସୁନ୍ଦରୀ, ତୋର ସୁନ୍ଦର ରୂପ ଦେଖିଲେ ଦେବତା ବି ମୋହି ହୋଇଯିବେ । ତୁ ମା ଏହିଠାରେ ଥା ସମର୍ଯ୍ୟ ଜଣ୍ଡି ଆମେ ବ୍ୟବସ୍ଥା କରାଇ ଦେବୁ । ବାବାଜୀ କଥାରେ ରାଣୀ ସେହି ମଠରେ ରହିଲେ ।

ଏଣେ ବିଦ୍ୟୁଲତା ଭଗବତୀଙ୍କି ସେବାକରି ନିଜ ଦୁଃଖ ଜଣାଉଥାଏ । ଏହିପରି କେତେଦିନ ତାଙ୍କର କଟି ଗଲାଣି । ବିଦ୍ୟୁଲତା ଦିନେ ପୂଜା ଶେଷରେ ଡାକିଲା, ମା ତୁ ଯେବେ ପ୍ରସନ୍ନ ନ ହେବୁ ଆଜି ଏ ଜୀବନ ରଖିବି ନାହିଁ । ଏହି ଭାବନା କରି ବସି ରହିଲା । ସେ ଦିନ ଆଉ କିଛି ଖାଇଲା ନାହିଁ । ତାର ବିକଳ ଭଗବତୀ ସହି ପାରିଲେ ନାହିଁ । ଅତି ସୁନ୍ଦର ରୂପରେ ବିଦ୍ୟୁଲତା ଆଗରେ ଉଭା ହୋଇ କହିଲେ ଆଲୋ ମା ! ତୁ ଆଉ ଚିନ୍ତା କରନାହିଁ । ତୋର ମୁକ୍ତି ନିକଟରେ ହେବ । ତୁ କବାଟ ଦେଇ ଘରେ ଥିବୁ, ଯେଉଁ ପୁରୁଷର ହାତ ଲାଗିଲେ କବାଟ ଫିଟିଯିବ ତୁ ଜାଣିବୁ ସେଇ ତୋର ବର । ତାହାର ହାତରେ ଏ ଅସୁରୁଣୀ ମରିବ । ଏହାକହି ଭଗବତୀ ଅନ୍ତର୍ଦ୍ଧାନ ହୋଇଗଲେ । ବିଦ୍ୟୁଲତା ବର ପାଇ ଚୁପ୍ ହୋଇ ଥାଏ । ଅସୁରୁଣୀ କଥା ଭଲ ଭଲ ବୁଲୁଥାଏ ।

ଅମରେନ୍ଦ୍ର ବଣରେ ବୁଲୁ ବୁଲୁ ତା ଆଗରେ ସେ ଅସୁରୁଣୀର କୋଠା ଦେଖି ଭାବିଲା ଏ ଜଙ୍ଗଲ ମଧ୍ୟରେ ସୁନ୍ଦର କୋଠା କିଏ କଲା । ଏହା ଭାବି ସେ କୋଠା ପାଖକୁ ଗଲା, ଦେଖିଲା ଦୁଆରମୁହଁ ବନ୍ଦ ଅଛି । ଏ ଠୋକା ହାତ ମାରନ୍ତେ ଦରଜା ଫିଟିଗଲା । ଦରଜା ଫିଟିଯିବାରୁ ଅମରେନ୍ଦ୍ର ଭିତରକୁ ଯାଇ ଦେଖେ ତ ଘର ସବୁ ଶୂନ, ଖାଲି ହାଡ଼ ଗଦା ହୋଇ ପଡ଼ିଅଛି । ଏ ସାହାସ କରି ଆହୁରି ଭିତରକୁ ଯାଇଁ ଦେଖେ ତ ଗୋଟିଏ ଦିବ୍ୟସୁନ୍ଦରୀ

ସେଠାରେ ବସିଛୁ । ଟୋକା ଭାବିଲା ଏ କଅଣ ସେ ରାକ୍ଷସୀ ନା ବଣଦେବତା । ଏତ ମୋତେ ନିଶ୍ଚୟ ଖାଇବ—ଡର ପଳାଇଗଲେ ଲାଭ କ'ଣ । ମୁଁ ପଳାଇଗଲେ, ଏ ମୋତେ ଛାଡ଼ିଦେବ, ନା ମୁଁ ଏହାଠାରୁ ବର୍ତ୍ତିପିବ । ସେଠୁ କଅଣ କଲା ନା ଟୋକା ଜୀବନ ଆଶା ଛାଡ଼ି ଯେଉଁଠି ବିଦ୍ୟୁଲତା ବସିଥିଲା ସେହି ଘରେ ପଶିଥିଲା । ବିଦ୍ୟୁଲତା ତ ଆଗରୁ ଡର ପାଇଛୁ । ସେ ପଚାରିଲା—

ତୁମେ କିଏ—ଏଠିକି କାହିଁକି ଆସିଛ ?

ଅମରେନ୍ଦ୍ର—ମୁଁ ଜଣେ ରାଜାର ପୁଅ ମୋର ବାପା ଏ ବଣକୁ ପାରିଧି କରି ଆସିଥିଲେ । ସେ ନଅରକୁ ନ ଫେରିବାରୁ ମୁଁ ତାଙ୍କୁ ଖୋଜିବାକୁ ଆସିଛୁ ।

ବିଦ୍ୟୁ—ତୁମର ନାମ କଅଣ କହିବ ?

ଅମର—ମୋର ନାମ ଅମରେନ୍ଦ୍ର ।

ଅମର ପଚାରିଲା, ତୁମେ କୌଣସି ରାଜାର ଝିଅ ବୋଲି ମୋର ଅନୁମାନ ହେଉଛୁ । ପ୍ରକୃତରେ ତୁମେ କିଏ, ତୁମର ଘର କେଉଁଠାରେ; ତୁମେ ଏଠାକୁ କପରି ଆସିଲ ? ସନ୍ଦେହ ଫିଟାଇ ମୋତେ କୁହ ।

ବିଦ୍ୟୁଲତା କହିଲା, ମୁଁ ଅସୁରୁଣୀ ନୁହେଁ କି ଠାକୁରାଣୀ ନୁହେଁ, କି ପିଶାଚୀ ନୁହେଁ କି ମାୟାବିନୀ ନୁହେଁ ।

ଶ୍ରୀମନ୍ତ ଦେଶର ରାଜା ବୀରକେଶରୀ, ମୁଁ ତାହାଙ୍କର ଭାରି ଗେହ୍ଲା ଝିଅ, ବାପା ମୋତେ ଦଣ୍ଡେ ହେଲେ ପାଖରୁ ଛାଡ଼ନ୍ତି ନାହିଁ । ଦିନେ ବାପା ମୋତେ ସଙ୍ଗରେ ନେଇ ଏହି ବଣକୁ ସୈନ୍ୟ ସାମନ୍ତ ସହ ଶୀକାର କରିବାକୁ ଆସିଲେ ଏ ବଣରେ ଗୋଟିଏ ଅସୁରୁଣୀ ବୁଢ଼ୀ ଅଛୁ, ସେ ମୋର ବାପାକୁ ମାରି ମୋତେ ଆଣି ଏଠାରେ ରଖିଛୁ ମୋର ନାମ ବିଦ୍ୟୁଲତା, ମୋର ଗୋଟିଏ ଭାଇଅଛୁ । ତାର ନାମ ଅକ୍ଷୟ କୁମାର ।

ଅମରେନ୍ଦ୍ର ଏକଥା ଶୁଣି ଦେହରେ ଦମ୍ଭ ଧରିଲେ । ବିଦ୍ୟୁଲତା ତାଙ୍କୁ ଘର ଭିତରକୁ ନେଇ ଅସୁରୁଣୀ ଆଣିଥିବା ଜନସ ଫଳ ମୂଳଯାକ ତାଙ୍କୁ ଖାଇବାକୁ ଦେଲା । ଦୁହେଁଯାକ ବସି ଦୁଃଖ ସୁଖ କଥାବାର୍ତ୍ତା ହେଲେ । ବିଦ୍ୟୁଲତା ଗୋଟିଏ ଫୁଲମାଳ ଧରି ଅମରେନ୍ଦ୍ର ବେକରେ ଗଳାଇ ଦେଇ ଗୋଡ଼ତଳେ ପଡ଼ି କହିଲା ଆଜଠାରୁ ମୁଁ ତୁମକୁ ସ୍ୱାମୀରୂପେ ବରଣ କରି ଏ ଜୀବନ ତୁମକୁ ସମର୍ପଣ କଲି । ଏହା କହନ୍ତେ ଅମରେନ୍ଦ୍ର ଖୁସିହୋଇ ତାଙ୍କୁ ଆଲିଙ୍ଗନ କରି କୋଳରେ ବସାଇଲେ ।

ଅମରେନ୍ଦ୍ର କହିଲା, ବିଦ୍ୟୁ ଚାଲ ବର୍ତ୍ତମାନ ରାକ୍ଷସୁଣୀ ନାହିଁ । ଏହି ସୁଯୋଗରେ ଏଠାରୁ ପଳାଇ ଯିବା ।

ବିଦ୍ୟୁ ଏ କଥା ଶୁଣି କହିଲା, ଆମେ ଯାଇପାରିବା ନାହିଁ । ଆମେ ପଳାଇଲେ ସେ ଅସୁରୁଣୀ ଯେଉଁଠି ଥିବ ଅବଶ୍ୟ ଜାଣି ପାରିବ । ସେ ଜାଣି ପାରିଲେ, ଆମକୁ ଧରିଆଣି ଜୀବନରେ ମାରିଦେବ । ମୁଁ ଗୋଟିଏ କଥା ପାଞ୍ଚୁଛି, ମୋ କଥା କଲେ କୌଣସି ବିପଦ ପଡ଼ିବ ନାହିଁ । ତୁମେ ମାଇକିନିଆ ବେଶ ହୋଇ ମୋ ପାଖରେ ରୁହ, ଅସୁରୁଣୀ ଆସି ପଚାରିଲେ କହିବି ଏ ମୋର ସଙ୍ଗାତ । ମୋତେ ଖୋଜି ନ ପାଇବାରୁ ବଣକୁ ଆସି ମୋତେ ଦେଖି ମୋ ପାଖକୁ ଆସିଥିଲେ । ମୁଁ ସଙ୍ଗାତକୁ କହିଲି, ଏଠାରେ ମୁଁ ବଡ଼ ଖୁସିରେ ଅଛି । ତୁ ବି ଏଠାରେ ରହ ଦୁହେଁଯାକ ରହିବୁ । ମୋ କଥାରେ ସେ ବିଶ୍ୱାସ କରିବ । ସମସ୍ତ ଜାଣି ତାଙ୍କୁ ମାରିବାର ବ୍ୟବସ୍ଥା କରିବା । ମୋର ବାପା ଘରି ଘର, ମୁଁ ଦେଖିଛି । ଯେତେ ଅସ୍ତ୍ର, ଶସ୍ତ୍ର, ତେଣ୍ଟା, ତ୍ରିଶୂଳ, ଖଣ୍ଡା ଅସୁରୁଣୀକି ମାରିଲେ ତାର କିଛି ହେଲନାହିଁ । ତାଙ୍କୁ ବଳରେ ପାରି ହେବନାହିଁ । କୌଶଳ କରି ମାରିବାକୁ ହେବ

ବିଦ୍ୟୁଲତା କଥା ଶୁଣି ଅମରେନ୍ଦ୍ର ମନକୁ ବେଶ୍ ପାଇଲା । ସେଠୁଁ ସେ ସ୍ତ୍ରୀ ବେଶ ଧରି ବିଦ୍ୟୁଲତା ପାଖରେ ରହିଲା ।

ସନ୍ଧ୍ୟା ହେଲାଠୁଁ ଅସୁରୁଣୀ ଆସି କହିଲା ଲୋ' ଝିଅ, ତୋ ପାଖରେ ଏଇଟି କିଏ ବସିଛି ।

ବିଦ୍ୟୁ କହିଲା ମା, ଏ ମୋର ସଙ୍ଗାତ, ମୋତେ ଖୋଜି ଏଠିକି ଆସିଥିଲା । ମୋର ଭେଟ ପଡ଼ିବାରୁ ମୁଁ ପାଖରେ ରଖିଛି ।

ଅସୁରୁଣୀ ଏକଥା ଶୁଣି କହିଲା, ହଉ ଦୁହେଁଯାକ ଏଠାରେ ଖୁସିରେ ରୁହ । ଏହା କହି ସେ ଗୁଡ଼ାଏ ମାଉଁସ, ମଦ ଖାଇଦେଇ ଶୋଇବାକୁ ଗଲା । ବିଦ୍ୟୁ ଯାଇ ତାଙ୍କୁ ଆଉଁସି ଦେଉଥାଏ । ଏପରି ଦୁଇ ଚାରିଦିନ ଚାଲିଯିବାରୁ ଦିନେ ବିଦ୍ୟୁଲତା ଅସୁରୁଣୀକି ଆଉଁସି ଦେଉ ଦେଉ କହିଲା, ମା ! ତୁ ତ ଆମକୁ ଖୁସିରେ ରଖିଛୁ । ଆମର ତ ଆଉ ଭରସା କେହି ନାହିଁ, ଯେବେ ମା, ତତେ କିଏ ମାରିଦିଏ କିମ୍ବା ତୁ ମରିଯାଉ, ଆମ ଅବସ୍ଥା ତ ବାରଣ୍ଡା ଦକଡ଼ା ହେବ । ଏହି କଥା ଭାବି ଆଜି ମନଟା ଭଲନାହିଁ, ଖାଲି କାନ୍ଦ ମାଡ଼ୁଛି ।

ଅସୁରୁଣୀ ଠୋ ଠୋ ହସିଉଠି କହିଲା, ମୋତେ କିଏ ମାରିବ ଲୋ ମାଆ, ମୋ ଜୀବନ ଗନ୍ଧମାର୍ଦ୍ଦନ ପର୍ବତ ମଝିରେ ଯେଉଁ ପଦ୍ମ ପୋଖରୀ ଅଛି, ସେହି ପୋଖରୀ ମଝିରେ ଗୋଟିଏ ଦୀପଦଣ୍ଡି ଅଛି । ସେହି ଦୀପଦଣ୍ଡି ଭିତରେ ଗୋଟିଏ ବାକ୍ସ ଅଛି । ସେ ବାକ୍ସ ଭିତରେ ଫରୁଆ ଗୋଟିଏ ଅଛି । ସେ ଫରୁଆ ଭିତରେ ଗୋଟିଏ ଭଅଁର ଅଛି । ସେହି ଭଅଁର ମୋର ପ୍ରାଣ; ଏତେ କଥା କିଏ ଜାଣିବ ଯେ ମୋତେ ମାରିବ । ତୁ ମୋର ଝିଅ ବୋଲି ତୋତେ କହିଦେଲି, ଏ କଥା କେହି ଜାଣନ୍ତି ନାହିଁ । ଏହା କହି ବିଦ୍ୟୁକୁ ବୋଧ ଶୋଧ କରି ଶୋଇବାକୁ ଗଲା । ସକାଳ ହେଲାକ୍ଷଣି ଅସୁରୁଣୀ ଚରିବାକୁ ଚାଲିଗଲା ।

ବିଦ୍ୟୁଲ୍ଲତା ଅମରେନ୍ଦ୍ରକୁ କହିଲା ସବୁ ତ ଏବେ ଜଣା ପଡ଼ିଲା । କିପରି କଅଣ ହେବ । ଏହିପରି ଦୁଇଦିନ ଗତ ହୋଇଗଲା । ଦିନେ ରାତିରେ ବିଦ୍ୟୁଲ୍ଲତା ଅସୁରୁଣୀକୁ କହିଲା, ମା, ମୋ ସଙ୍ଗାତ ଘରକୁ ଦୁଇ ଚାରିଦିନ ସକାଳେ ଯିବ ବୋଲି କହୁଛି । ଦେଶରୁ କେତେ ଅପୂର୍ବ ଜିନିଷ ଆଣିବ । ତୁ କ'ଣ କହୁଛୁ । ବୁଢ଼ୀ କହିଲା ହଉ ଯେବେ ତାର ଇଚ୍ଛା ହେଉଛି ତ ଯାଉ ।

ସେଠୁ କଅଣ ହେଲାନା, ଅମରେନ୍ଦ୍ର ନିଜର ହାତହତିଆର ଧରି ବାହାରି ଗଲା । ଯାଇ ଯାଇ ପର୍ବତ ମଧ୍ୟରେ ଥିବା ପଦ୍ମପୋଖରୀଟି ଦେଖିଲା । ସେ ପୋଖରୀ କୂଳରେ ଜଣେ ସାଧୁ ଥାନ୍ତି । ଏ ଟୋକା ତାଙ୍କୁ ସେବା କରିବାରୁ ସାଧୁ କହିଲେ, ତୁ ଏ ଫୁଲଟି ନେ । ଏ ଫୁଲ ଦେଖାଇଲେ କେହି ତୋତେ କିଛି କହିବେ ନାହିଁ । ତୁ ତୋ କାମ ହାସଲ କରିବୁ ।

ଅମରେନ୍ଦ୍ର ଫୁଲଟି ଧରି ପାଣିରେ ପହଁରି ଯାଇ ଦ୍ୱୀପଦଣ୍ଡୀରେ ଉଠିଲା । ସେ ଲୁହା ସିନ୍ଦୁକ ପାଖକୁ ଯିବାରୁ ସାପ ବାଟ ଘେରିଲା । ଏ ଫୁଲଟି ଦେଖାନ୍ତେ ସାପ ବାଟ ଛାଡ଼ିଦେଲା । ସେ ସିନ୍ଦୁକ ଫିଟାଇ ଫରୁଆକୁ ଧରି ପୁଣି ପହଁରି କରି କୂଳକୁ ଆସିଲା । ସେଠାରେ ଲୁଗାପଟା ଚୂପୁଡ଼ି ଏକଧ୍ୟାନରେ ଦଉଡ଼ୁଛି । ଯାଇ ସେ ଅସୁରୁଣୀ ଘରେ ବିଦ୍ୟୁଲ୍ଲତା ପାଖରେ ପହଞ୍ଚି ତାକୁ ସବୁ କହିଲା ।

ରାତି ହେବାରୁ ବିଦ୍ୟୁଲ୍ଲତା ଅସୁରୁଣୀକୁ ଆଉଁସି ଦେଉଥାଏ । ଅମରେନ୍ଦ୍ର ଫରୁଆ ଭିତରୁ ଭଅଁରଟି କାଢ଼ି ଯେମନ୍ତେ ଚିପିଦେଇଛି ଅସୁରୁଣୀ ବୋପାଲୋ ମାଆଲୋ କହି ଛଟିପିଟି ହୋଇ ମରିଗଲା ।

ଅସୁରୁଣୀ ମରିଯିବାରୁ ତା ଘରେ ଯେତେ ଧନରତ୍ନ ଥିଲା, ଅମରେନ୍ଦ୍ର ସେ ସବୁ ନେଇ ନିଜ ରାଜ୍ୟକୁ ଆସିଲା । ପାତ୍ର ମନ୍ତ୍ରୀ

ପ୍ରଜାମାନେ ଦେଖି ଆନନ୍ଦ ହେଲେ । ନୂଆ ରାଣୀ ବିଦ୍ୟୁଲ୍ଲତାଙ୍କୁ ନଅରରେ ରଖି ସତ୍ତ୍ୱ କରି ମନ୍ତ୍ରୀଙ୍କ କହିଲେ, ବାପା ତ ମଲେ ମୁଁ ବହୁ କଷ୍ଟରେ ଜୀବନ ନେଇ ଆସିଲି, ତୁମେମାନେ ମାଆଙ୍କୁ ଛାଡ଼ିଦେଲ । ମୁଁ ଯାଉଛି ସୈନ୍ୟସାମନ୍ତ ନେଇ ମାଆଙ୍କୁ ଖୋଜି ସଙ୍ଗରେ ଆଣିବି । ଏହା କହି ସୈନ୍ୟସାମନ୍ତ ନେଇ ରାଣୀ ବିଦ୍ୟୁଲ୍ଲତାଙ୍କୁ ବୁଝାଇ ସୁଝାଇ କହି ଭଲ ବେଳା ଦେଖି ବାହାରି ଗଲେ । ସୈନ୍ୟମାନଙ୍କ କୋଳାହଳରେ ବାଟଘାଟ କମ୍ପି ଉଠୁଥାଏ । ଏଣେ କଣ ହୋଇଛି ନା, ରାଣୀ ତ ବାବାଜି ମଠରେ ଅଛନ୍ତି, ଅକ୍ଷୟ କୁମାର ବି ସେଇ ମଠରେ ଅଛି । ବାବାଜୀର ରାଣୀଙ୍କ ଉପରେ ଲୋଭ, ଅକ୍ଷୟର ମଧ୍ୟ ରାଣୀଙ୍କ ଉପରେ ଲୋଭ, ଗୋଟାଏ ମାଇକିନିଆଙ୍କୁ ତ ଦୁଇଜଣଯାକ ଆଶା କଲେଣି । ଏକୁଟିଆ ହେଲେ ସିନା ସୁବିଧା ହେବ । ବାବାଜୀ ଭାବିଲା, ଏ ଟୋକାକୁ ଆଜି ବଣକୁ ପଠାଇ ଦେବି ଫୁଲ ଫଳ ସଂଗ୍ରହ କରି ଆଣିବାକୁ । ଟୋକା ବଣକୁ ଗଲେ ମୋତେ ଏକୁଟିଆ ସୁବିଧା ହେବ । ଏହା ଭାବି ରାତିରେ ଅକ୍ଷୟକୁ ଡାକି ବାବାଜୀ କହିଲେ ଏଠାରୁ ତିନିକୋଶ ଦୂରରେ ନୀଳତମାଳ ଫୁଲ ଅଛି, ଅମୃତ ଫଳ ଅଛି । ତୁ ଯାଇ ସେ ନୀଳତମାଳ ଫୁଲରୁ ଶହେ ଆଠ, ଅମୃତ ଫଳରୁ ପାଞ୍ଚୋଟି ଆଣିଲେ ଠାକୁରଙ୍କୁ ଭୋଗ ଦିଆଯିବ । କାଲି ବଡ଼ିସକାଳୁ ଚାଲିଯିବୁ । ଅକ୍ଷୟକୁମାର ଏହା ଶୁଣି ହଁ କହି ଶୋଇଲା ।

ସକାଳ ହେବାରୁ ଅକ୍ଷୟକୁମାର ବାବାଜୀଠାରୁ ବିଦାୟ ହୋଇ ଗୋଟିଏ ବୁଦାମୂଳେ ଲୁଚିକରି ରହିଲା । ଟୋକା ଗଲାପରେ ବାବାଜୀ ମନ ତ ଅଥୟ । ସେ ଆଜି ପାପପୂର୍ବେ କଅଣ ବସ୍ତୁର କରିବ । କନ୍ଦର୍ପ ତ ତାଙ୍କୁ ବାଇ କରିଛି ।

କନ୍ଦର୍ପ ଅଧୀନେ ଯେହ୍ନ ଚରିତ,
କୁଳମାନ ଲାଜ ସେହ୍ନ ଛାଡ଼ଇ ।
କ୍ଷଣିକସୁଖ ସୁଧାପରି ମଣେ,
ପଛକେ କି ହେବ ମନେ ନ ଆଣେ ।
ପାପପୁଣ୍ୟ ଧର୍ମ ମାର୍ଗ ଛାଡ଼ଇ,
କାଇଁ ଥାଉଁ ଥାଉଁ ନର୍କ ଭୋଗଇ ।

ବାବାଜୀ ରାଣୀଙ୍କ ପାଖକୁ ଡାକି ଖୁବ୍ ଆଦର କରି ବସାଇଲେ । କହିଲେ, ହେ ସୁନ୍ଦରୀ । ତୋର ସୁନ୍ଦରପଣ ଦେଖି ମୋର ମନ ଆଉ ସମ୍ଭାଳି ହେଉନାହିଁ । ତୁ ମୋତେ ଦୟାକରି ପ୍ରୀତି ଦାନ ଦେଇ ମୋର ଏ ପ୍ରାଣକୁ ରଖ । ଏହା କହି ବାବାଜୀ ରାଣୀଙ୍କୁ କୁଣ୍ଢାଇ ଧରିବାକୁ ହାତ ବଢ଼ାନ୍ତେ ଅକ୍ଷୟ ତ ଲୁଚିକରି ଦେଖୁଥିଲା, ସେ ବିଜୁଳି ପରି ଦଉଡ଼ି ଆସି ବାବାଜୀ ବେକରେ ଚ୍ଛେଟେ ଦେଲା ଯେ ଏକା ଚ୍ଛେଟେକେ ବାବାଜୀ ଖତମ । ସେଠୁ ବାବାଜୀ ଗଣ୍ଡି ମୁଣ୍ଡ ନେଇ ମଶାଣିରେ ପକାଇ ଦେଇ ଆସିଲା । ରାଣୀ ଏହାଦେଖି ଆଶ୍ବସ୍ତ ହେଲେ ।

ସେ ଦିନ କଟିଗଲା । ରାଣୀ ଅକ୍ଷୟ କୁମାରକୁ ପୁଅ ପରି ମନେକରି ଥାଏ । ଏ ଚଣ୍ଡାଳ ରାଣୀକି ପାପଦୃଷ୍ଟି ଦେଇଥାଏ । ଅକ୍ଷୟ କୁମାରର ବୟସ କୋଡ଼ିଏ ଯାଏ ହେବ । ରାଣୀର ବୟସ ଚାଳିଶ କି ପଇଁଚାଳିଶ ହେବ ।

ଦିନେ ଅକ୍ଷୟ ରାଣୀଙ୍କି କହିଲା, ତୁମର ସୁନ୍ଦର ରୂପ ଦେଖି ମୁଁ ଧୈର୍ଯ୍ୟଧରି ପାରୁନାହିଁ । ଆଜି ତୁମ ସଙ୍ଗରେ ବିବାହ କରିବି, ତୁମେ ରାଜି ହୁଅ ତ ଭଲକଥା ନଚେତ୍ ଯବରଦସ୍ତ ତୁମ ସଙ୍ଗରେ ମୋର ମନକାମନା ମେଣ୍ଟାଇବି । ରାଣୀ ଏହା ଶୁଣି ଅବାକ୍ । ବିକଳରେ ଡାକିଲେ, ହେ ଭଗବାନ ! ମୋତେ ଏ ବିପଦରୁ

ରକ୍ଷାକର । ଯେତେବେଳେ ଅକ୍ଷୟକୁମାର ଜବରଦସ୍ତି ରାଣୀଙ୍କ ଧରେ, ରାଣୀ ବଡ଼ ପାଟିରେ ଡାକଲେ, କଏ କେଉଁଠି ଅଛ ଏ ଚଣ୍ଡାଳ ମୋର ଇଜ୍ଜତ ନଷ୍ଟ କରିବାକୁ ବସିଛି ମୋତେ ରକ୍ଷା କର । ରାଣୀଙ୍କର ବିକଳ ଚିତ୍କାର ଶୁଣି ଅମରେନ୍ଦ୍ର ଘୋଡ଼ା ଝିପଟାଇ ତାଙ୍କ ପାଖେ ପହଞ୍ଚିଲା । ଅକ୍ଷୟ କୁମାରକୁ ମାରିଲା ଗୋଟାଏ ଚଟକଣିଆ ଯେ ସେ ପାଞ୍ଚହାତ ଦୂରରେ ପଡ଼ିଗଲା । ମାଆକୁ ଚିହ୍ନି ମାଆର ଗୋଡ଼ତଳେ ପଡ଼ି ମାଆକୁ ସାନ୍ତ୍ୱନା ଦେଲା ।

ସୈନ୍ୟମାନଙ୍କୁ କହିଲା, ଏ ପାପିଷ୍ଠକୁ ବନ୍ଦୀକର । ଆଦେଶ ପାଇଲା ମାତ୍ରେ ସୈନ୍ୟମାନେ ଅକ୍ଷୟକୁମାରକୁ ବାନ୍ଧି ପକାଇଲେ । ତହୁଁ ଅମରେନ୍ଦ୍ର ମାଆକୁ ନେଇ ସୈନ୍ୟ ସାମନ୍ତ ଘେନି ଗଡ଼କୁ ଫେରି ଆସିଲା । ହୁକୁମଦେଲା ବନ୍ଦୀକୁ ଜେଲରେ ରଖ । ରଜା ଠିକ୍ ମରିଛନ୍ତି କି ନାହିଁ ଏ କଥା ନ ଜାଣିବା ଯାଏ ରାଣୀ ତ ଶିଙ୍କୁଳ କାଢ଼ିପାରୁ ନାହାନ୍ତି । ଶାସ୍ତ୍ର କହୁଛି ସ୍ତ୍ରୀମାନେ ସ୍ୱାମୀ କ ବାରବର୍ଷ ଅନାଇବେ, ଯେବେ ବାରବର୍ଷରେ ସ୍ୱାମୀ ଆସି ନ ପହଞ୍ଚେ ତେବେ ସେମାନେ ଶିଙ୍କୁଳ କାଢ଼ିବେ ।

ରାଜା ପାତ୍ର ମନ୍ତ୍ରୀଙ୍କ ଡକାଇ ବିଗୃର କଲେ ଏ ବନ୍ଦୀକ ନଅର ଠାକୁରାଣୀଙ୍କ ନିକଟରେ ବଳି ଦିଆଯିବ । ରାଜାଙ୍କର ଏ କଥାରେ ସମସ୍ତେ ରାଜିହେଲେ ।

ତହିଁଆରଦିନ ଠାକୁରାଣୀଙ୍କର ମାର୍ଜଣା ହେଲା । ବ୍ରାହ୍ମଣମାନେ ଆସି ମନ୍ତ୍ରପାଠକଲେ । ହୁଳହୁଳି ଝୁଣା ଗୋଲୁଲ ଧୂପରେ ମନ୍ଦିର କମ୍ପି ଉଠିଲା । ରାଜ୍ୟରେ ଘୋଷଣା ଦିଆଗଲା ଆଜି ନରବଳି ଦିଆଯିବ; ଯେଉଁମାନଙ୍କର ଇଚ୍ଛା ସେମାନେ ଆସି ଦେଖିବେ । ନାଗରିବାଲା ବୁଲି ବୁଲି ନରବଳି କଥା ଜଣାଇ ଦେଇ ଆସିଲା ।

ବିଦ୍ୟୁଲତା ଚୋଗୁଣି ରାଜାଙ୍କୁ ଡକାଇନେଇ କହିଲା, ଆଜି ଏତେ ବାଜା; ଏତେ ଆୟୋଜନ ହେଉଛି କାହିଁକି ?

ଅମରେନ୍ଦ୍ର କହିଲା, ଗୋଟିଏ ଲୋକ ମୋର ମାଆପ୍ରତି ବଳରେ ଅତ୍ୟାଚାର କରିବାକୁ ବସନ୍ତେ ମୁଁ ତାକୁ ଧରିଆଣି ବନ୍ଧୀରେ ରଖିଛି । କଥା ସ୍ଥିର ହୋଇଛି ଆଜ ତାକୁ ଠାକୁରାଣୀଙ୍କ ପାଖରେ ବଳ ଦିଆଯିବ—ସେହେତୁ ଏତେ ଆୟୋଜନ ହେଉଅଛି ।

ବିଦ୍ୟୁଲତା କହିଲା, ନରବଳ କପରି ଦିଆଯାଏ ମୁଁ ଦେଖିନାହିଁ । ସେଠାରେ ଡେରବାଡ଼ ଦିଆଯାଉ, ମୁଁ ଡେରବାଡ଼ ଏ ପାଖରେ ବସି ନରବଳ ଦେଖିବି । ରାଣୀଙ୍କ କଥା ଶୁଣି ନ ପାରି ଅମରେନ୍ଦ୍ର ଡେରବାଡ଼ ପକାଇ ରାଣୀଙ୍କି ସେଠାକୁ ଡକାଇ ନେଲା । ରାଣୀ ଯାଇ ଡେରବାଡ଼ ଭିତରେ ବସିଲେ ।

ପଜାପର୍ବ ସାରି ବଳଦେବା ବେଳ ହେଲାକ୍ଷଣି ସେଠାରେ ଘାତକ ଆସି ପହଞ୍ଚିଲା । ଅକ୍ଷୟକୁମାରଙ୍କୁ ଗାଧୋଇ ଦେଇ ନୂଆ ଲୁଗା ପିନ୍ଧାଇ ତା' ବେକରେ ଫୁଲମାଳ ପକାଇ ମନ୍ଦିରକୁ ଆଣିଲେ । ମନ୍ଦିର ଆଗରେ ତା ବଳୀ ପଡ଼ିବ । ଅକ୍ଷୟ କୁମାରଙ୍କୁ ବାନ୍ଧି ସେଠାରେ ଆଣି ହାଜର କଲେ । ଅମରେନ୍ଦ୍ର କହିଲା, ରେ ପାପୀ, ତୋର ଇଷ୍ଟଦେବତାଙ୍କୁ ସ୍ମରଣ କର । ଆଉ ତୋର ଯେବେ କିଛି କହିବାର ଥାଏ କହ ।

ଅକ୍ଷୟ କୁମାର ହାତ ଯୋଡ଼ି କହିଲା, ହେ ରାଜା ! ମୁଁ ବଡ଼ ଦୋଷୀ, ମୁଁ ଅପରାଧ କରିଛି । ମୁଁ ଯେଉଁ ଅପ୍ରାଧ କରିଛି ତାର ଏକମାତ୍ର ଦଣ୍ଡ ମୃତ୍ୟୁ । ମାତ୍ର ମୋର କିଛି କହିବାର ଅଛି—

ଶ୍ରୀବନ୍ତ ଦେଶର ରାଜା ଶ୍ରୀ ବୀରକେଶରୀ ।
ତାହାଙ୍କର ପୁତ୍ର ମୁଁ ଅକ୍ଷୟ ନାମଧାରୀ ॥

ପିତା ମୋର ପାରିଧିକୁ କରିଲେ ଗମନ ।
ବିଦ୍ୟୁଲତା ଭଉଣୀକୁ ଆଣିଲେ ସଙ୍ଗେଣ ॥
ନ ଫେରନ୍ତେ ପିତା ମୂର୍ଖ ଖୋଜଣ ଆସିଲି ।
ଜୀବନରେ ଅଚନ୍ତ କ ଜାଣି ନ ପାରିଲି ॥
ରାଜକୁଳ କଳଙ୍କ ମୁଁ କଲି ମନ୍ଦ କର୍ମ ।
ଧର୍ମରକ୍ଷା କୁଳ ଧର୍ମ କରିଲି ଅଧର୍ମ ॥
ହେ ପିତା ବୀରକେଶରୀ ଯେଉଁ ଏହ୍ନ ଜଳ
ଆଜ୍ଞେ ବିଦ୍ୟୁଲତା ଦେଖ ଭାଇ କଲି ବଲ ॥

ଏହା କହନ୍ତେ ନୂଆରାଣୀ ବିଦ୍ୟୁଲତା ତ ଡେଙ୍ଗବାଡ଼ ଭିତରେ ବସିଥିଲି ସେ ଦଉଡ଼ ଆସି ଭାଇକ କୁଣ୍ଢାଇ ପକାଇଲା ।

ଏକଥା ଦେଖି ଅମରେନ୍ଦ୍ର ଚାଟକା ହୋଇ କହିଲ, ରାଣୀ ଏ କଅଣ ତୁମର ଭାଇ ?

ରାଣୀ କହିଲ ମୋର ପ୍ରାର୍ଥନା, ଅଜାଣତରେ ମୋର ଭାଇ ଦୋଷ କରିଛି, ତାକୁ କ୍ଷମା ଦିଆଯାଉ ।

ରାଣୀଙ୍କର କଥା ଶୁଣି ପାତ୍ରମନ୍ତ୍ରୀ ଯେ ଯେଉଁଠି ଥିଲେ, ସମସ୍ତେ ଏକ ସ୍ୱରରେ କହିଲେ ବଳକୁ ଛାଡ଼ ଦିଆଯାଉ ।

ଅମରେନ୍ଦ୍ର ଅକ୍ଷୟକୁ ବନ୍ଦୀରୁ ଆଣି ରାଜା ବେଶରେ ସଜାଇ ଆପଣା ପାଖରେ ରଖିଲେ । ହେଲେ ଅକ୍ଷୟ ଲଜ୍ୟାରେ ଜଳପୋଡ଼ ଯାଉଥାଏ ।

ବିଦ୍ୟୁଲତା ଅକ୍ଷୟ କୁମାରକୁ ସଙ୍ଗରେ ନେଇ ବୁଢ଼ିରାଣୀଙ୍କ ପାଖରେ ପହଞ୍ଚିଲ । ଅକ୍ଷୟକୁମାର ରାଣୀଙ୍କର ଗୋଡ଼ତଳେ ଲମ୍ବ ହୋଇ ପଡ଼ ଲୁହଲ୍ଲଳରେ ବିଖଣ୍ଡ । ବିଦ୍ୟୁଲତା ରାଣୀକୁ ସବୁ

ବୁଝାଇ ଦିଅନ୍ତେ ରାଣୀ ଅକ୍ଷୟର ଦୋଷ ମାର୍ଜନା କରି ତାଙ୍କୁ ଡାକି ଉଠାଇ ପାଖରେ ବସାଇଲେ ।

ରାଜା ଭେଟଣେଇ କଷ୍ଟୁଦନ ଏକାଠି ରହିଲା ପରେ ବନ୍ଧ୍ୟଳରାର ପରାମର୍ଶରେ ଅମରେନ୍ଦ୍ର ନିଜର ଭଉଣୀ ବସନ୍ତ ପ୍ରିୟାଙ୍କୁ ଅକ୍ଷୟକୁମାର ସଙ୍ଗେ ବିବାହ କରାଇ ଦେଇ ଅନେକ ଯାନଯୌତୁକ ଦେଇ ତାଙ୍କୁ ବିଦାୟ କରିଦେଲେ ।

ଅମରେନ୍ଦ୍ରଙ୍କୁ ସମସ୍ତେ ଧନ୍ୟ ଧନ୍ୟ କଲେ ।

ଅକ୍ଷୟ କୁମାର ନିଜ ଦେଶରେ ପହଞ୍ଚି ବସନ୍ତ ପ୍ରିୟା ସହିତ ସିଂହାସନରେ ବସି ପୁତ୍ର ପରି ପ୍ରଜାମାନଙ୍କୁ ପାଳି ଆନନ୍ଦରେ ରହିଲା ।

ଦୁଇକୁମାରଙ୍କ ସରିଲା ପାଠ ।
ଗାଁ ଗାଁ ହୋଇ ବସିଲା ହାଟ ॥
ଧରମର ଜୟ ପାପରେ କ୍ଷୟ ।
ବୁଝ ଏଥୁ ଶିଖି ବାଟରେ ଯାଅ ॥
ମୋ କଥାଟି ଏବେ ହୋଇଲା ଶେଷ ।
ଦୋଷ ଥିଲେ ନ ଘେନିବ ବିଦୁଷ ॥

—:O:—

## ଚନ୍ଦ୍ରକାନ୍ତ

କଳିଙ୍ଗ ଦେଶର ରାଜା ପୁରୁଷୋତ୍ତମଦେବ, ତାଙ୍କର ଦୁଇଟି ରାଣୀ । ବଡ଼ରାଣୀ ପଦ୍ମାବତୀ, ସାନରାଣୀ ଲୀଳାବତୀ । ଦଶବର୍ଷ କଟିଗଲା ରାଜାଙ୍କର ପିଲାପିଲି କିଛି ହେଲେ ନାହିଁ । ରାଜା ରାଣୀ

ମନ ଦୁଃଖରେ ଥାନ୍ତି । ରାଜା ଭାବିଲେ ମୁଁ ମରିଗଲେ ତ ସିଂହାସନ ଛୁଚ୍ଛା ପଡ଼ିବ । ମୁଁ ତ ନର୍କରେ ବାଣ୍ଟି ହେବ । ପିତୃ ପିତାମହମାନେ ପିଣ୍ଡ ନ ପାଇ ଅମୋକ୍ଷ ରହିବେ । ମୋର ଆଉ ଏ ନିର୍ଲ୍ଲଜ ଜୀବନ ରଖି ଲାଭ କଅଣ ।

ରାଜା ଏହିପରି ମନ ଦୁଃଖରେ ଥାନ୍ତି, ଦିନେ ଶିବଙ୍କ ଦେଉଳ ଭିତରେ ପଶି ଭିତରେ କବାଟ ଲଗାଇ ଦେଲେ । ଲମ୍ବ ହୋଇ ଶିବଙ୍କ ପାଦରେ ପଡ଼ିଥାନ୍ତି । ସକାଳ ହେବାରୁ ପାତ୍ର, ମନ୍ତ୍ରୀ, ଦାସୀ ରାଣୀ ଆଦି ସମସ୍ତେ ରାଜାଙ୍କୁ ଖୋଜିଲେ ନ ପାଇ ହତାଶ ହୋଇ ଖୋଜୁଥାନ୍ତି । ରାଜା ତ ଏକ ଧ୍ୟାନରେ ପଡ଼ିଥାନ୍ତି, ଅଚେତନ ହୋଇଗଲେ । ଗାଧୁଆ ନାହିଁ, ଖିଆ ନାହିଁ କି ପିଆ ନାହିଁ । ମହାଦେବ ରାଜାଙ୍କର ଅବସ୍ଥା ଦେଖି ପ୍ରସନ୍ନ ହୋଇ ପାର୍ବତୀଙ୍କୁ ନେଇ ସେଠାରେ ପହଞ୍ଚିଲେ । ଚେତକୁ ଛୁଆଁଇ ଦିଅନ୍ତେ ରାଜା ଚେତଉଠି ଆଗରେ ଶିବ ପାର୍ବତୀଙ୍କୁ ଦେଖି ଗୋଡ଼ତଳେ ପଡ଼ି, ଉଠି ହାତ ଯୋଡ଼ି ଠିଆ ହେଲେ । ଶିବ କହିଲେ, ରାଜା ! ମୁଁ ତୋ ଉପରେ ପ୍ରସନ୍ନ ହେଲି । ତୁ କଅଣ ବର ମାଗୁଛୁ ମାଗ ।

ରାଜା କହିଲେ, ପ୍ରଭୁ, ମୋତେ ଗୋଟିଏ ସନ୍ତାନ ଦିଅ । ଶିବ ପାର୍ବତୀଙ୍କ ସଙ୍ଗରେ ବିଚାରିକରି ଗୋଟିଏ ଫଳ ଦେଲେ—କହିଲେ ଏଫଳଟି ନେ, ସାନରାଣୀ ଏ ଫଳଟି ଶୁଦ୍ଧ ମନରେ ଖାଇଲେ ସର୍ବ ସୁଲକ୍ଷଣ ପୁତ୍ରଟିଏ ହେବ । ଏହି ବର ଦେଇ ଶିବ ପାର୍ବତୀ ଅନ୍ତର୍ଦ୍ଧାନ ହୋଇଗଲେ ।

ରାଜା କବାଟ ଫିଟାଇ ନଅରକୁ ଆସି ମାଜଣା ହୋଇ ରାଜ୍ୟ ଖବର ବୁଝିଲେ । ରାତିରେ ସାନରାଣୀ ପୁରକୁ ଯାଇ ତାଙ୍କୁ ସମସ୍ତ କଥାକହି ଫଳଟି ଦେଲେ । ରାଣୀ ଗୋଡ଼ହାତ ଧୋଇ

ଶିବଙ୍କୁ ସ୍ମରଣ କରି ଫଳଟି ଭକ୍ଷଣ କଲେ । କିଛିଦିନ ପରେ ସାନ ରାଣୀର ଗର୍ଭହେଲା ।

ସାନରାଣୀର ଗର୍ଭହେବା ଜାଣି ବଡ଼ରାଣୀ ହିଂସାରେ ଜଳି ପୋଡ଼ିଗଲା । ଭାବିଲା କିପରି ଏହାର ଗର୍ଭ ନଷ୍ଟ କରିବ । ଏହା ଭାବି ସରବତ ସଙ୍ଗରେ ବିଷ ମିଶାଇ ତାର ବିଶ୍ୱାସୀ ଚୋଇଲୀକୁ ଡାକି କହିଲା, ତୁ ଏ ସର୍ବତ ନେଇଯା, ସାନରାଣୀକୁ କହିବୁ ବଡ଼ରାଣୀ ଦେଇଛନ୍ତି । ଏହାକୁ ପିଇଲେ ଦେହ ଫୁର୍ତ୍ତି ହେବ । ସାବଧାନ, ଏକଥା ଯେପରି କେହି ଜାଣିବେ ନାହିଁ । ତୁ ଏ ସୁନାହାରଟି ପୁରସ୍କାର ନେ, ପରେ ଆଉ ଦେବି । ଦାସୀ ସର୍ବତ ନେଇ ସାନରାଣୀଙ୍କ ଗୋଡ଼ତଳେ ପଡ଼ି କହିଲା, ମା, ବଡ଼ରାଣୀ ସର୍ବତ ଦେଇଛନ୍ତି, ଏହା ଖାଇଲେ ଶ୍ରୀଅଙ୍ଗ ଅଳସ ଛାଡ଼ିଯିବ । ଆଉ ଗୋଟିଏ କଥା ଗୋପନରେ କହିବି । ଦାସୀ ଭାବିଲା, ଏ ଗର୍ଭ ହୋଇଛନ୍ତି ।

ଶିଶୁ ଗର୍ଭିଣୀ ଗୋରୁବଧ ।
ଏ ବଡ଼ ଅଟଇ ପ୍ରମାଦ ॥
ଏ ତିନି କର୍ମ ଯେ କରନ୍ତି ।
ଜୀବନ ଥାଉଁ ସେ ମରନ୍ତି ॥
ହରିପୁରେ ଠାବ ନାହିଁ ତାର ।
ରୌରବ ନର୍କ ଭୋଗ ତାର ।

ରାଣୀଙ୍କ ଗୋପନରେ କହିଲା ଏଥିରେ ବିଷ ମିଶିଛି । ସାବଧାନ, ରାଣୀ ସରବତକୁ ମୁହଁ ପାଖକୁ ମିଛରେ ନେଇ ଫୋପାଡ଼ି ଦେଲେ ।

ତହିଁଆରଦିନ ବଡ଼ରାଣୀ ନିଜେ ବଜେ ହୋଇ ବସି କହିଲେ, କାଲି ସର୍ବତ ପାଇଥିଲ ? ସାନରାଣୀ କହିଲେ ଆପଣ ଯେତେବେଳେ

ନଦେଇଥିଲେ ନ ପିଅନ୍ତ କପଟ । କଥାରେ ବୋଧ ହେବାରୁ ବଡ଼ରାଣୀ ଫେରି ଆସିଲେ ।

ଦଶମାସ ଦଶଦିନ ହୁଅନ୍ତେ ରାଣୀଙ୍କର ଗର୍ଭକଷ୍ଟ ହେଲା । ସେ ତାଙ୍କରି ବିଶ୍ୱାସୀ ଦାସୀକି କହିଲେ ମୋ ଗର୍ଭ ହେଲାଦିନୁ ତ ବଡ଼ରାଣୀ ଅନେକ ଅହଙ୍କାର କରୁଛନ୍ତି । ପୁଅ ହେଲେ କିଏ ରଖିବ । ତୁ ଗୋଟିଏ କାମ କରିବୁ । ଏ ମୁଦି, ବାଡ଼ି, ଟୋପି କିଛି ଅସରପି ଓ ରତ୍ନମାନ ରଖିଥା । ପିଲା ଜନ୍ମ ହେଲାମାତ୍ରେ ତୁ ଲୁଚାଇ ନେଇ ଯିବୁ । ପିଲା ଓ ତୋର ଖରଚ ସକାଶେ ଏହି ରତ୍ନ ଖରଚ କରିବୁ । ପୁଅ ବଡ଼ ହେଲେ ଏ ମୁଦି, ଟୋପି ଓ ବାଡ଼ି ତାକୁ ଦେବୁ ବୋଲି କହିଲେ । କିଛି ସମୟ ପରେ ପୁଅଟି ଜନ୍ମ ହେଲା । ରାଣୀଙ୍କର ଚେତା ବୁଡ଼ିଗଲା । ରାଣୀ ଚେତାମାଇ ପିଲାକୁ ଦାସୀ ହାତରେ ଟେକି ଦେଇ କହିଲେ, ତୁ ତାହାର ମା' । ମାରିଲେ ମାର, ରଖିଲେ ରଖ । ବଡ଼ ରାଣୀ ପୁଅ ହେବା ଶୁଣି ଦାସଦାସୀଙ୍କୁ ନେଇ ସେଠାରେ ପହଞ୍ଚିଲେ, ଦେଖିଲେ କାଠ କୁଣ୍ଢାଇଟାଏ । ଏହା ଦେଖି ବଡ଼ରାଣୀ ଭାରି ଖୁସି ହେଲେ । ରାଜାଙ୍କୁ କହିଲେ ତମର ନବକୁମାରକୁ ଦେଖିବାକୁ ବିଜେହେଉନ୍ତୁ । ରାଜା ଯାଇ ଦେଖି ଦୁଃଖରେ ଫେରି ଆସିଲେ ।

ଦାସୀ ଭଗବାନଙ୍କୁ ଡାକି ଡାକି ଯାଉଥାଏ । ସକାଳ ହେଲା ବେଳକୁ ଏ ରଜା ମୁଲକ ପାରହୋଇ ଆଉ ଗୋଟିଏ ରାଜାର ମୁଲକରେ ପହଞ୍ଚିଲା । ପିଲାକୁ ନେଇ ବାଟ ଚାଲୁଛି । ବାଟରେ ବଣ ପଡ଼ିଲା । ସେ ବଣରେ ଜଣେ ସିଦ୍ଧ ଯୋଗୀ ଥିଲେ । ସେଠାରେ ଯାଇ ବିଶ୍ରାମ କଲା । ପିଲାକୁ କିଛି କ୍ଷୀର ପିଆଇ ସେଠାରେ ଦାସୀ ସେହି ସିଦ୍ଧ ପୁରୁଷଙ୍କୁ କହିଲା, ଆପଣ କଲ୍ୟାଣ କରନ୍ତୁ ଏ ପିଲାଟିର ସବୁ କଷ୍ଟଖଣ୍ଡନ ହେଉ । ସିଦ୍ଧପୁରୁଷ ସବୁ ଯୋଗବଳରେ ଜାଣି କହିଲେ

ମୋ ଆଶୀର୍ବାଦରେ ପିଲାଟି ଭଲରେ ରହିବ, ନିଜ ରାଜ୍ୟରେ ରାଜା ହେବ । ଏହା ଶୁଣି ଦାସୀ ବିଦାୟ ନେଇଗଲା । ସେ ରାଜାଙ୍କ ଫୁଲ ବଗିଚାରେ ଜଣେ ମାଳି ଥାଏ । ଦାସୀ ସେ ମାଳି ଆଶ୍ରାରେ ତା ଘରେ ରହି ପିଲାକୁ ବଢ଼ାଇଲା । ପିଲାଟି ଦାସୀକୁ ମା' ମାଳୀକି ବାବା ବୋଲି ଡାକେ । ମାଳିର କିଛି ପିଲାପିଲି ନ ଥିଲା । ସେ ଏ ଟୋକାକୁ ପୁଅପରି ଶ୍ରଦ୍ଧା କଲା ।

ପିଲାକୁ ଯେତେବେଳେ ୧୬ ବର୍ଷ, ଏ ଦାସୀ ବେମାର ପଡ଼ି ମରିଗଲା । ମଲା ଆଗରୁ ଟୋପି, ମୁଦି ବାଡ଼ି, ଏ ଟୋକାକୁ ଦେଇ ଗଲା । ଏ ଟୋକା ସେ ସବୁ ବ୍ୟବହାର କରୁଥାଏ । ସେ ଦେଶ ନାଁ ହେଉଛି ରତ୍ନପୁର । ରାଜାଙ୍କ ନାମ ପ୍ରତାପକେଶରୀ । ସେ ଦେଶ ରାଜାଙ୍କର ବିଳାସବତୀ ବୋଲି ଗୋଟିଏ ଝିଅ ଥାଏ । ତାର ରୂପ ଯେପରି ସୁନ୍ଦର, ଗୁଣ ମଧ୍ୟ ସେହିପରି ସୁନ୍ଦର । ସେତେ ବେଳେ ତା ସମାନ ସୁନ୍ଦରୀ ପୃଥିବୀରେ ନ ଥିଲେ । ରାଜାଝିଅ ଘର ଭିତରେ ବଢୁଥାଏ । ଝିଅର ବିବାହ ବୟସ ହେବାରୁ ତାର ଚିତ୍ରପଟକୁ ରାଜା ଦେଶେ ଦେଶେ ଫେରାଉଥାନ୍ତି ।

ଏଣେ କ'ଣ ହୋଇଛି ନା କଳିଙ୍ଗ ରାଜା ପୁରୁଷୋତ୍ତମ ଦେବ ସଭାରେ ବସିଛନ୍ତି । ଏତିକିବେଳେ ଦୂତ ଯାଇ ଚିତ୍ରପଟ ଦେଖାନ୍ତେ ରାଜା ଚିତ୍ରପଟ ଦେଖି ବେହୋସ ହୋଇଗଲେ । ପାତ୍ର ମନ୍ତ୍ରୀ ପାଣି ସିଞ୍ଚିବାରୁ କେତେବେଳେ ହୋସ ଆସିଲା । ପାତ୍ର ମନ୍ତ୍ରୀ ପଚାରିଲେ ପ୍ରଭୁଙ୍କର କଣ ହେଲା ହଠାତ୍ ବେହୋସ ହୋଇଗଲେ । ରାଜା କହିଲେ କଅଣ କହିବି ମନ୍ତ୍ରୀ, ସେ ଚିତ୍ରପଟକୁ ଦେଖି ବେହୋସ ହୋଇଗଲି କିପରି ସେ କନ୍ୟାକୁ ପାଇବି । ନ ପାଇଲେ ମୋର ଜୀବନ ରହିବ ନାହିଁ । ମନ୍ତ୍ରୀ ଅନୁସନ୍ଧାନ କରି ଜାଣିଲେ ଏ କନ୍ୟା ରତ୍ନପୁର ରାଜଜେମା । ତହୁଁ ମନ୍ତ୍ରୀ କହିଲେ, ମହିମା !

ହୋଉଛନ୍ତି ରତ୍ନପୁର ରାଜାଙ୍କର ଜେମା, ସେତ ଆମ ଅଧୀନ ରାଜା ଏତେ ବ୍ୟସ୍ତ ହୋଉଛନ୍ତି କାହିଁକି ?

ମନ୍ତ୍ରୀଙ୍କ ପରାମର୍ଶରେ ରତ୍ନପୁରକୁ ଚିଠି ଦେବାର ଠିକ୍ ହେଲା । ରାଜା ମନ୍ତ୍ରୀକି କହିଲେ ପତ୍ର ଲେଖ । ସେଠୁ ମନ୍ତ୍ରୀ କାଗଜକଲମ ଘେନି ରାଜାଙ୍କର କହିବା କଥାମାନ ଲେଖିଲେ କି ଆହେ ରତ୍ନପୁର ମହାରାଜା ତୁମ୍ଭର ଜେମାଦେଈଙ୍କି ଆମ୍ଭଙ୍କୁ ପ୍ରଦାନକର । ଶତପତ୍ରରେ ଜେମାଙ୍କର ଚିତ୍ର ଦେଖି ଆମ୍ଭର ବାଞ୍ଛା ହେବାକୁ ଚଉ ବଳିଲା ଖୁସିମନରେ ଆପଣା କନ୍ୟା ଦାନ କର । ପୁରୁଣା ବନ୍ଧୁ ପୁଣି ନୂଆ ବନ୍ଧୁ ହେବ । ଆନନ୍ଦ ଉପରେ ଆନନ୍ଦ ହେବ । ମନ୍ତ୍ରୀ ପତ୍ର ଲେଖି ଦୂତହସ୍ତରେ ଦେଲେ ।

ଦୂତ ପତ୍ର ନେଇ କେତେ ଗ୍ରାମ, ସହର, ବଣ, ପାହାଡ଼ ଅତିକ୍ରମ କରି ରତ୍ନପୁରରେ ପହଞ୍ଚିଲା । ରାଜାଙ୍କ ଦୁଆରେ ପହଞ୍ଚି ଦ୍ୱାରୀକି କହିଲା; ତୁ ରାଜାଙ୍କୁ ଜଣାଅ, ମୁଁ କଳିଙ୍ଗଦେଶ ରାଜାଙ୍କର ଦୂତ ଆସିଛି । ଦ୍ୱାରୀ ଯାଇ ଜଣାନ୍ତେ ରାଜା ହୁକୁମ ଦେଲେ ତାକୁ ଡାକିଆଣ । ଦୂତଯାଇ ରାଜାଙ୍କୁ ମାନ୍ୟ କରି ପତ୍ର ବଢ଼ାଇ ଦେଲା । ତହୁଁ ରାଜା ପତ୍ର ଫିଟାଇ ପାଠକଲେ । ସଭାରେ ସମସ୍ତେ ଥିଲେ । ମନ୍ତ୍ରୀ, ପାରିଷଦ, କଟୁଆଳ, ସେନାପତି ଏମାନେ ଶୁଣି ଆନନ୍ଦ ହେଲେ । ସେଇଠୁ ରାଜା ପତ୍ରନେଇ ଅନ୍ତଃପୁରକୁ ଯାଇ ରାଣୀଙ୍କ ଆଗରେ ପତ୍ର ପଢ଼ିଲେ । ରାଣୀ ପତ୍ର ଶୁଣି ଖୁସିହୋଇ କହିଲେ, ଭଲହେଲା, ଝିଅ ମନଲାଖି ବର ମିଳିଲା । ଆମଠାରୁ ତ ସେ ବଡ଼ଆ ରାଜାଟାଏ—ହଁ ଭଲ ହେବ ।

ସେଠୁଁ ରାଜା ପାତ୍ରମନ୍ତ୍ରୀ ଏମାନଙ୍କ ପରାମର୍ଶ ନେଇ ଲେଖିଲେ କି ମୋର ଜେମା ତୁମକୁ ଦେବା ସତ୍ୟ, ଏଥିରେ କିଛି ସନ୍ଦେହ ନାହିଁ । ବିବାହର ଦ୍ରବ୍ୟ ଆୟୋଜନ କରିବାକୁ ଆମକୁ ଗୋଟିଏ

କର୍ଷ ଲଗିବ । ଆସନ୍ତାବର୍ଷରେ ବାହାଘର ହବ । ଏତେ ଲେଖି ପତ୍ର ମୁଦ ଦୂତ ହସ୍ତରେ ଦେଲେ । ଦୂତ ଫେରିଯାଇ କଳିଙ୍ଗ ରଜାଙ୍କୁ ପତ୍ର ଦିଅନ୍ତେ ସେ ଅତି ଆନନ୍ଦିତ ହେଲେ ।

ସେଇଠୁଁ କଅଣ ହୋଇଚ୍ଛନା ଏକ ଦିନକରେ ବିଳାସବତୀ ସଖୀମାନଙ୍କୁ ନେଇ ଫୁଲ ବଗିଚ୍ଛକୁ ଯାଇ ସେଠାରେ ନାନାଦି ଫଲ ତୋଳି ସଖୀମାନଙ୍କ ସଙ୍ଗରେ ଥଟ୍ଟା ମଜା ହୋଇ ବୁଲୁଥାନ୍ତି, ଗୀତ ଗାଉଥାନ୍ତି, ଫୁଲ ତୋଳୁଥାନ୍ତି ବଗିଚ୍ଛଯାକ ବୁଲୁଥାନ୍ତି । ଏହି ସମୟରେ ମାଳପୁଅ ବଗିଚ୍ଛ ଭିତରେ ଥିବା ପୋଖରୀକି ଗାଧୋଇ ଆସିଲା । ସେ ତ ଭୁବନମୋହନ କନ୍ଦର୍ପ ପରି ସୁନ୍ଦର । ରାଜାଝିଅ ନଜର ଏ ମାଳ ଟୋକା ଉପରେ ପଡ଼ିଲା । ମୁହଁକୁ ଦେଖି କେମା କମ୍ପିତହୋଇ ପଡ଼ିଲେ । ସାଙ୍ଗରେ ଆସିଥିବା ସଖୀମାନେ କାନ୍ଦି ଉଠିଲେ । କାନ୍ଦଣା ଶୁଣି ରଜା ରାଣୀ ଦଉଡ଼ି ଆସିଲେ । ଝିଅକୁ କୋଳରେ ବସାଇ ଅନେଇ ଉପଚାର କଲେ । କାନ ଫୁଙ୍କି, ପାଣି ଦେଇ, ଅତର ଛିଟା ମାରିଲେ । ନେତ ଅଞ୍ଚଳରେ ବିଞ୍ଚି ଦେଲେ । କିଛି କାହିଁକି ହେବ । ସମସ୍ତେ କହିଲେ କେମା ବଡ଼ ସୁନ୍ଦରୀ । ଏ ବଗିଚ୍ଛରେ ଡାଆଣୀ କି ପିଶାଚୁଣୀ କି ଭୂତର ଘୁଇପଡ଼ିଲା; କି କଏ ଚ୍ଛାପିଲା । ମା ବାପ ବାହୁନାଇ କାନ୍ଦୁଥାନ୍ତି ! କାହିଁକି ଲୋ ମୋ ମା, ବଗିଚ୍ଛକୁ ଆସି ଏମନ୍ତେ ହେଲୁ । କାହିଁକି ଆଖି ଫିଟାଉ ନାହୁଁ । କଥା କହୁନାହୁଁ । ତୋ ଚନ୍ଦ୍ର ମୁଖରେ ମଧୁର ବାଣୀ କହ । ଏପରି କହି ବାଡ଼େଇ ଚମ୍ପୁଡ଼ି ହେଉଥାନ୍ତି ।

କେତେଅଡ଼ୁ କେତେ ବୈଦ୍ୟ ଆସିଲେ କେତେ ଗୁଣିଆ ଅସିଲେ । କେତେ ଝଡ଼ାଫୁଙ୍କା ହେଲା, କେତେ ଔଷଧ ପାଣି ଦିଆଗଲା । କେତେ କଷ୍ଟରେ କେମା ଆଖି ଫିଟାଇ ଅନାଇଲା । ହୁଁ ହୁଁ କରି କଥାକହିଲା । ସେଇଠୁ କେମାକୁ ଘରକୁ ନେଇଆସିଲେ ।

ଘରକୁ ଆସି ପୂର୍ବପରି ଖାଇଲା ନାହିଁ କି ପିଇଲା ନାହିଁ । କେହି କିଛି ପଚାରିଲେ ଜବାବ ବି ଦେଲାନାହିଁ । ସଦାବେଳେ ବସି କାନ୍ଦୁଥାଏ । ଏମନ୍ତେ କିଛିଦିନ ଗଲା, ଝିଅ ଦିନକୁ ଦିନ କ୍ଷୀଣ ହେବାକୁ ଲଗିଲା । ଏହା ଦେଖି ରାଣୀ ବଡ଼ ଦୁଃଖିତ ହେଲେ । ଝିଅ ଲାଗି କାହାରି ମନ ଭଲ ନ ଥାଏ ।

ଦିନେ ରାଣୀ ଧାଈମାକୁ ଡାକି କହିଲେ,, ତୁ ତାକୁ ବଢ଼ାଇଛୁ । ଝିଅଲାଗି ସିନା ସବୁ । ତୁ ଯା, ତାକୁ ବୁଝାଇ ସୁଝାଇ ଫୁସୁଲା ଫୁସୁଲି କରି କହିବୁ, ଯେପରି ହେଉ ତା ମନ ମନାଇ ତା କଥା ବୁଝି ମୋତେ ଆସି କହିବୁ ।

ରାଣୀଙ୍କଠୁ ଶୁଣି ଧାଈମା ଜେମା ପାଖରେ ହାଜର । ତା ଗୋଡ଼ ହାତ ମୁଣ୍ଡ ଆଉଁସିଦେଇ କୋଳରେ ବସାଇ କେତେ ବୁଝାବୁଝି କରି କହିଲା, ମା ଲୋ, ପିଲାବେଳୁ କେତେ କଷ୍ଟ କରି ତୋତେ ବଢ଼ାଇଛି । ସମସ୍ତଙ୍କ ଭରସାତ ତୋରି ଉପରେ । ତୁ ତ ମା ଦିନକୁ ଦିନ ନ ଖାଇ ନ ପିଇ କଣ୍ଠା ହେଲୁଣି । ତୋ ସକାଶେ ତୋ ବାପା ମା ବ୍ୟସ୍ତରେ କାନ୍ଦି କାନ୍ଦି ଶୁଖିଗଲେଣି । କଅଣ ତୋ ମନର କଥା ମୋତେ ଫିଟେଇ କହ । ତୋ ମନକଥା ଜାଣିଲେ ସିନା ସବୁ କରିପିବ । ମୋ ମାଆଟା ପରି, ମୋ ଆଗରେ ସତକଥା ଖୋଲିକରି କହ—

ଜେମା ଏ କଥା ଶୁଣି କାନ୍ଦି କାନ୍ଦି କହିଲା, ଧାଈମା, ତୋ ଆଗରେ କଅଣ କହିବି, ନ କହିଲେ ଆଉ କେତେ ସହିବି ।

ଏହାଶୁଣି ଧାଈମା କହିଲା, ଦେଖ ଅଗ୍ନି କି ସ୍ନେହକରି ପତଙ୍ଗ ଅଗ୍ନିରେ ପୋଡ଼ିମରୁଛି, ତେବେ ବି ଛାଡ଼ୁନାହିଁ । ସେହିପରି ସବୁ-କଥା । ତୋ ମନରେ ଯାହା ଅଛି ଖୋଲିକରି କହ ।

ରାଜଜେମା ଧାଈମାଠାରୁ ଏପରି କଥାଶୁଣି ଆଉ ସମ୍ଭାଳି ନ ପାରି କହି ପକାଇଲା, ହେ ଧାଈମା, ମୁଁ ଆମ ବଗିଚା ମାଳି ପୁଅର

ରୂପ ଦେଖି ମୋହିତ ହୋଇଛି । ସେ ବଡ଼ ଶୋଭାକର, ତାହାପରି ସୁନ୍ଦର ପୁରୁଷ ତ୍ରିଭୁବନରେ ନାହିଁ । ତା ତେଜ ସୂର୍ଯ୍ୟପରି, ମୁହଁ ପୂର୍ଣ୍ଣଚନ୍ଦ୍ରକୁ ବଳ, କର୍ଣ୍ଣ ଚମ୍ପା ଫୁଲ ଠାରୁ ବଳ, ବାହୁ ହାତୀଶୁଣ୍ଢ ପରି, ବଳ ବାଘପରି, ଛାତି ବିସ୍ତାର ସିଂହପରି । ଯେବେ ସେ ମାଳିପୁଅକୁ ଆଣି ନ ଦେବୁ ଆଜି ଏ ପ୍ରାଣ ରହିବ ନାହିଁ ।

ଧାଈମା ଏହାଶୁଣି କହିଲା, ଜେମା କି କଥା କହୁଛୁ ଗୋ, ଏକଥା ଶୁଣିଲେ ଲୋକମାନେ କଅଣ କହିବେ ? ଗୃହଆଡ଼େ ତୁମ୍ଭର ଅପବାଦ ହେବ, ଆଉ ଏକଥା ମୁହଁରେ ଧର ନାହିଁ । ସେଟା ଛାର ମାଳି ଟୋକାଟା, ସେ ତୁମଲାଗି ହେବ । କେତେ କେତେ ବଡ଼ ବଡ଼ ରାଜା ଓ ରାଜକୁମାର ପଥ ଅନାଇ ବସିଛନ୍ତି ।

ଜେମା ଏ କଥା ଶୁଣି କହିଲେ, ପ୍ରେମର ଉଚ୍ଚ ନୀଚ ନାହିଁ କି ସାନବଡ଼ ନାହିଁ । କିଏ ରାଜା କିଏ ଗୋଲାମ ଏହା ବିଚାର ହୁଏନାହିଁ । ଏଠୁ ଅଧିକ ତୋତେ କଅଣ କହିବି, ମୋ ମନକଥା ଶୁଣି ଏପରି କହୁଲୁନାହିଁ ଯେ ଜଳନ୍ତା ନିଆଁରେ କୁଟା ପକାଇଲୁ ।

ଧାଈମା ଏପରି ଶୁଣି ଭାବିଲା ଏତ ବଦନାମର ଭୟ ରଖିନାହିଁ । ସାନ ବଡ଼ ବିଚାର କରୁନାହିଁ । ଏହାକୁ କହିଲେ କଅଣ ହେବ, ଯାଉଛି ରାଣୀଙ୍କି ଜଣା କରିବ । ଏହା କହି ଧାଈମା ଆସି ରାଣୀଙ୍କି କହିଲା, ମା ମଣିମା ତମ ଝିଅ ଯାହା କହିଲା ତା କାନ ଶୁଣିବାର କଥା ନୁହେଁ । ସେଠୁ ଆଦ୍ୟ ପ୍ରାନ୍ତ ସବୁକଥା କହିଲା ।

ରାଣୀ ଶୁଣି ଘଣ୍ଟାଏ ଥକାମାରି ବସିପଡ଼ିଲେ । ତାପରେ କହିଲେ ହଉ ଯା, ସେ ମାଳିଟୋକାକୁ ଡ଼ାକିଆଣିବୁ । କହିବୁ ଜେମା ଡ଼ାକୁଛନ୍ତି । ସନ୍ଧ୍ୟାବେଳକୁ ଜେମାଙ୍କ ନଅରକୁ ଯିବ ।

ଧାଈ ଯାଇ ବଗିଚାର ମାଳି ଟୋକାକୁ ଦେଖି ତାଟକା ହୋଇଗଲା । ଭାବିଲା ଏ କଅଣ ସତେ ମାଳିପୁଅ । ଏ ତ କନ୍ଦର୍ପପରି

ସୁନ୍ଦର ନହେଲେ କି ଜେମା ଭୁଲିଥାନ୍ତେ । ମାଳିଟେ କାକୁ ଯାଇ କହିଲି ଜେମାଙ୍କର ଉଚ୍ଛବ ହୋଇଛି ତୁମେ ଆଜ ସନ୍ଧ୍ୟାରେ ତାଙ୍କ ଜଆସକୁ ଯିବ ।

ମାଳିଟୋକା ଏହା ଶୁଣି ଆଖି ଲାଲ ଲାଲ କରି ହଠାତ୍ କହିଲା, ଯା ଏଠୁ ପଳା । ଆଉ ଏକଥା କହନାହିଁ, ନଗଲେ ତୋ ନାକ, କାନ କାଟିଦେବ । ଏହା ଶୁଣିକରି ଧାଈ ଅତରଛ ହୋଇ ପଳାଇଯାଇ ଜେମାକୁ କହିଲା, ମୁଁ ବୁଢ଼ୀ ହେଲି, ଏପରି ମୋତେ କେହି ଗାଳିଦେଇ ନଥିଲା । ସେ ମାଳିଟୋକା ମୋତେ ଯାହା ଗାଳିଦେଲା କଅଣ କହିବି । ଏଟା ଗ୍ରେଟଜାତି,ଗ୍ରେଟଲୋକ । ଏହା ସଙ୍ଗରେ ଗୋଟାଏ କି ପ୍ରେମ ଗୋ । ମାନ ଯିବ, ମହତ ଯିବ, କାଲି ସକାଳେ ବାହାଘର ହେବ । ପାଟ ମହାଦେଈ ହେବ, ଏଥିରେ କେତେ ଇଜ୍ଜତ ବଢ଼ିବ ।

ଏକଥା ଶୁଣି ଜେମା କହିଲା, ଦେଖ ଧାଈମା ! ଆକାଶରେ ଚାନ୍ଦ ପଡ଼ିଛି । ଦୁନିଆଟାଯାକ ଆଲୁଅ ହୋଇଛି । ପତଙ୍ଗମାନେ ତା ପାଖକୁ ଯାଉଛନ୍ତି କି ? ସେଥିରେ ମୋର କଅଣ ଅଛି । ତୁ ଯେବେ ମୋତେ ଭଲପାଉ ତ ମୋ କଥା ମାନି ଆଉଥରେ ତା ପାଖକୁ ତୁ ଯା, ସେ ପୁଣି ତୋତେ କଅଣ କହିବ, ଆସି ମୋତେ କହିବୁ । ତୁ ଭଲକରି ଜାଣ ଯେ କଳିଙ୍ଗ ରଜା ଏ ଜୀବନର ହୋଇପାରେ, ମାଳିପୁଅ ଏ ପ୍ରାଣର ହୋଇଛି ତୁ ଆଉ ଥରେ ଯା ।

ସେଣୁ ଧାଈ ଆଉଥରେ ଗଲା । ମାଳିପୁଅ ତଳକୁ ମୁହଁକରି ବସିଛି, କାନ୍ଦୁଛି । ଯେମନ୍ତେ ଧାଈକି ଦେଖିଲା କହିଲା, ମୋତେ କଅଣ ଜେମା ଡକାଇଛନ୍ତି କି ? ଧାଈ କହିଲା—ହଁ ।

ସେଠୁଁ ମାଳପୁଅ ଲୁଗାପଟା ପିନ୍ଧି ବାହାରିଲା । ଦୁହେଁଯାକ ଯାଇ କେମା ଘର ପାଖରେ ପହଞ୍ଚିଲେ । ସେଠୁଁ ମାଳପୁଅକୁ ବାହାରେ ଠିଆକରି ଧାଇଁ କେମାକୁ ଜଣାଇଦେଲି ।

କେମା କହିଲେ ମଞ୍ଚରେ ପରଦା ପକାଇ ତାଙ୍କୁ ଘର ଭିତରକୁ ଡ଼ାକିଆଣ । କେମାଙ୍କ କଥାମତେ ମଞ୍ଚରେ ପରଦା ପଡ଼ିଲା, ଚଉକିରେ ମାଳପୁଅକୁ ବସାଇଲେ, ଏପାଖ ଚଉକିରେ କେମା ନିଜେ ଯାଇ ବସିଲେ । କିଛି ସମୟ ପରେ ମାଳପୁଅ କହିଲା ହଜୁର ମୋତେ କାହିଁକି ଡ଼କାଇଥିଲେ ? କାଲି ଉଦ୍ୟାନରେ ଆସିଲି ନାହିଁ । ଆପଣ ରଜାଙ୍କ ଝିଅ, ମୁଁ ଆପଣଙ୍କ ଗୋଲାମ । ମୋ ବାପା ମାଳି ଆପଣଙ୍କ ଦାନାପାଣିରେ ପୋଷ ହେଉଛନ୍ତି । କାଲେ କିଛି ବିପଦ ଥାଏ, ତେଣୁ କାଲି ଉଦ୍ୟାନରେ ଆସିଲି ନାହିଁ । ଆଜ ଜୀବନରୁ ଆଶା ଛାଡ଼ି ଛାମୁରେ ହାଜର ହେଲି । ଯାହା ଇଚ୍ଛା ତାହା କରନ୍ତୁ ।

ଏ କଥା ଶୁଣି କେମା କହିଲେ, ଯାହା କହିଲ, ତାହା ସତ ତୁମ୍ଭେ ଯେ ଡ଼ରିକରି ଆସିଲନାହିଁ ସେ ପ୍ରାଣ ଏ ପ୍ରାଣତ ଏକ । ସେ ପ୍ରାଣଗଲେ ଏ ପ୍ରାଣଯିବ । ପୁଣି କେମା କହିଲେ, ଯେଉଁଦିନଠୁଁ ମୁଁ ତୁମ୍ଭକୁ ଫୁଲବଗିଚାରେ ଦେଖିଛି ସେଇଦିନଠୁଁ ସ୍ୱାମୀ ପଦରେ ବରଣ କରିଛି । ମୁଁ ତୁମ୍ଭ ଛଡ଼ା ଆଉ କାହାକୁ ବଶ ହେବିନାହିଁ । ଏହି କଥା କହିବାକୁ ଡ଼କାଇଛି । ମୋ ମା ବାପା କଳିଙ୍ଗ ରାଜାଙ୍କୁ ବର କରିଛନ୍ତି । ମୁଁ ତାଙ୍କୁ ବଶ ହେବିନାହିଁ । ଏହା କହି ନିଜ ଗଳାରୁ ରତ୍ନମାଳଟି କାଢ଼ି ପରଦା ଆଡ଼େଇ ମାଳପୁଅ ଗଳାରେ ଦେଇ ଗୋଡ଼ତଳେ ପଡ଼ିଗଲା । ସେଠୁ ମାଳପୁଅ ତା ହାତର ରତ୍ନମୁଦିଟି କାଢ଼ି କେମା ହାତରେ ପିନ୍ଧାଇଦେଇ ବଗିଚାକୁ ଫେରି ଆସିଲା ।

ଏହିପରି ଘରେ ବରଷେ କଟିଗଲାରୁ କଳିଙ୍ଗରାଜା ବହୁ ଆଡ଼ମ୍ବରରେ ବିବାହ ହେବାକୁ ଆସିଲେ । ବାଇଦ ବାଜଣା, ବାଣ ରୋଷଣିରେ ପୁର ଫାଟିପଡ଼ୁଥାଏ । ଏକଥା ଦେଖି ଜେମା ଲୁଚିକରି ରହିଲେ । ଜେମାଙ୍କୁ ଯେତେ ଖୋଜାଖୋଜି କଲେ ଆଉ ପାଇଲେ ନାହିଁ । କଳିଙ୍ଗରାଜାଙ୍କ ଲୋକେ ବି ଖୋଜିଲେ, ନପାଇ ଫେରି ଆସିଲେ ।

ରାଜା କହୁଥିବା ଗଳ୍ପରୁ ମନ୍ତ୍ରୀପୁଅ ସଙ୍ଗେ ଜେମାର ବିବାହ କରିଦେଲେ । ଆଉ କହୁଥିବା ବିଗୁରି ଝିଅ ଯୋଗିଙ୍କ ନେଇ ନଅର ଭିତରେ ରଖିଲେ । ରାଜାଙ୍କ ସଭାରେ ଯୋଗି ଯାଇ ବସେ । ଅନେକ ଅନେକ ବଡ଼ ବଡ଼ ଗୁହାରି ସମାଧାନ କରିବାକୁ ରାଜା ଯୋଗି ଉପରେ ଭାରଦେଲେ । ଏ ଟୋକା ଏପରି ଭାବରେ ସବୁ ଗୁହାରି ଶୁଣି ମାଲିମୋକଦ୍ଦମା ନିଷ୍ପତ୍ତି କଲା ଯେ ବାଦୀ ପ୍ରତିବାଦୀ ଉଭୟେ ସନ୍ତୁଷ୍ଟ ହେଲେ । ଏ ଟୋକାର ବିଚକ୍ଷଣ ବୁଦ୍ଧି ଦେଖି ପାତ୍ର ମନ୍ତ୍ରୀ ପ୍ରଜାପାଠକ ଧନ୍ୟ ଧନ୍ୟ କହିଲେ । ରାଜା ମଧ୍ୟ ବଡ଼ ଖୁସିହେଲେ ।

ରତ୍ନପୁର ରାଜାତ କଳିଙ୍ଗ ରାଜାଙ୍କୁ କର ଦିଅନ୍ତି । ଏ ବରଷ କରଦେବାକୁ ବାହାରନ୍ତେ ଯୋଗି କହିଲା ଆପଣ ବୃଦ୍ଧ ହେଲେଣି । ଏ ବର୍ଷର କର ମୁଁ ନିଜେ ନେଇକରି ଯିବି । ମହାରାଜାଙ୍କ ସହିତ ପରିଚୟ ହୋଇ ଆସିବି । ଏକଥା ଶୁଣି ରାଜା ଖୁସିହୋଇ ଯୋଗିଙ୍କ ଖଜଣା ଟଙ୍କା ଦେଇ ଲୋକବାକ ସହ ପଠାଇଦେଲେ । ଏ ଟୋକା କେତେଦିନରେ କଳିଙ୍ଗ ନଅରରେ ପହଞ୍ଚିଲା । ଦ୍ୱାରୀକୁ କହିଲା, ମହାରାଜାଙ୍କୁ ଜଣାଅ, ରତ୍ନପୁର ରାଜାଙ୍କ ଯୋଗି ଖଜଣା ନେଇ ଆସିଛନ୍ତି ।

ଦ୍ୱାରୀ ଏକଥା ସଭାରେ କହନ୍ତେ କଳିଙ୍ଗରାଜା ଶୁଣି ରାଗରେ ଅରହର । ପାତ୍ର ମନ୍ତ୍ରୀଙ୍କ କହିଲେ ଦେଖ, ରତ୍ନପୁର ରାଜା ଆମକୁ

ଝିଅ ଲୁଚ୍ଚାଇଲା, ପୁଣି ତାକୁ ବାହାଘର କରି ଯୋଇଁହାତରେ ଖଜଣା ଆମପାଖକୁ ପଠାଇଛୁ । ସେନାପତି କହିଲେ ହଜୁର, ତାକୁ ଏଠାକୁ ଡାକଆଣନ୍ତୁ । ଏଠାରେ ତାକୁ ବନ୍ଦୀକରି ରତ୍ନପୁରକୁ ଖବରଦେବା —ରତ୍ନପୁର ରାଜା ଆସିଲେ ଦୁହିଁଙ୍କ କଏଦ ଦେବା । ଏକଥା ସମସ୍ତଙ୍କ ମନକୁ ବେଶ୍ ପାଇଲା ।

ସେଠୁଁ ହାକିମ କହିଲେ ତାକୁ ଏଠାକୁ ଡାକଆଣ, ହାକିମ ଯାଇ କହନ୍ତେ ଯୋଇଁବାବୁ କର ନେଇ ସଭାରେ ପହଞ୍ଚି ଟଙ୍କା ତୋଡ଼ା ରଖିଦେଇ ରାଜାଙ୍କ ଗୋଡ଼ତଳେ ପଡ଼ିଲେ । ରାଜାଙ୍କ ହୁକୁମ ପାଇ ଉଠି ହାତଯୋଡ଼ି ଠିଆହେଲେ । ଏ ଟୋକା ମୁଣ୍ଡରେ ଟୋପି ନାଇଛୁ, ହାତରେ ମୁଦ ପିନ୍ଧିଛୁ, ବାଡ଼ିଟି ମଧ୍ୟ ଧରିଛୁ । ରାଜା ଟୋପି ଓ ବାଡ଼ିକ ଦେଖି ଟୋକାକୁ ପାଖକୁ ଡାକିନେଇ ଦେଖିଲେ ହାତରେ ମୁଦ ପିନ୍ଧିଛୁ ।

ରାଜା ନିଜର ଟୋପି, ନିଜର ମୁଦି ଓ ନିଜର ବାଡ଼ି ଦେଖି ଆଶ୍ଚର୍ଯ୍ୟହୋଇ ପଚାରିଲେ, ଆରେ ପିଲା, ଏ ଟୋପି, ଏ ମୁଦି, ଏ ବାଡ଼ି ଆମର । ଏହା ତୋତେ କିଏ ଯେ ଦେଲା, ତୋ ବାପା ନାଁ କଅଣ, ତୁ କେଉଁଠି ଥିଲୁ ସତ କହ ।

ଏ ଟୋକା କହିଲା, ମହାରାଜ ! ମୋ ପ୍ରକୃତ ବାପ କିଏ ମୁଁ ଜାଣେ ନାହିଁ । ମୋତେ ଜଣେ ଧାଈ ପାଳିଥିଲା, ମୋତେ ଷୋଳ-ବରଷ ହେଲାବେଳେ ସେ ମରିଗଲା । ମରିବା ଆଗରୁ ଏ ବାଡ଼ି, ଟୋପି, ମୁଦି ମୋତେ ଦେଇଯାଇ କହିଲା, ଏସବୁ ସାଇତି ରଖିଥିବୁ । ଦିନ ଆସିବ, ଏହିସବୁ ଦେଖି ତୋ ବାପ ତୋତେ ଚିହ୍ନିବେ । ମୁଁ ରତ୍ନପୁର ରାଜାଙ୍କ ମାଳିଘରେ ରହି ବଢ଼ିଛୁ, ମାଳିକୁ ବାପା ବୋଲି ଡାକେ । ଏଣେ ଦଇବ ଯୋଗକୁ ରତ୍ନପୁର ଜେମା ମୋତେ ଦେଖି ବର ଭାବେ ବରଣ କରିବାରୁ ମୁଁ ଜେମାଙ୍କୁ ବାହା ହୋଇ

ରତ୍ନପୁରରେ ଅଛି । ଏହା ଶୁଣି ରାଜାଙ୍କର ମନେପଡ଼ିଗଲା, ମୁଁ ତ ଏସବୁ ସାନ ରାଣୀକି ଦେଇଥିଲି, ଏ କେମନ୍ତେ ପାଇଲା, ଏହା ଭାବି ସାନ ରାଣୀଙ୍କ ପାଖକୁ ଯାଇ ସବୁ କହିଲେ ।

ସାନ ରାଣୀ ଏକଥା ଗର୍ଭ ହେବାଠାରୁ ବଡ଼ ରାଣୀ ବିଷ ଦେବା, ପିଲାକୁ ଧାଈ ଜିମା ଦେଇ ଟୋପି, ମୁଦି, ବାଡ଼ି ସନ୍ତକ ଦେବା କଥା ସବୁ କହିଲା । ରାଣୀଙ୍କଠାରୁ ଏହା ଶୁଣି ରାଜା ଦଉଡ଼ି ଆସି ପୁଅକୁ କୁଣ୍ଢାଇ ପକାଇ ଭୋ ଭୋ କାନ୍ଦିଲେ । ପାତ୍ର, ମନ୍ତ୍ରୀ, ନଗରବାସୀ ଏହା ଶୁଣି ତାଟକା—ସମସ୍ତେ ବଡ଼ ରାଣୀକି ଛିଛିକାର କଲେ ।

ରାଜାପୁଅକୁ ନେଇ ସାନ ରାଣୀକୁ ଦେବାରୁ ରାଣୀ କୋଳକୁ ନେଇ ମୁହଁରେ ଚୁମ୍ବନ ଦେଇ କୋଳରେ ବସାଇଲେ—ଅପତ୍ୟ ସ୍ନେହରେ ସ୍ତନରୁ କ୍ଷୀର ସ୍ରବିଲା । ରାଜା ଏହା ଦେଖି ଈଶ୍ୱରଙ୍କୁ ଧନ୍ୟ ଧନ୍ୟ କଲେ । ବଡ଼ ରାଣୀକୁ ଶୂଳିଦେବାକୁ ଜରୁରୀ ହୁକୁମ ଦେଲେ ।

ପୁଅ ଏକଥା ଶୁଣି ବାପା ଗୋଡ଼ତଳେ ପଡ଼ି କହିଲା, ବାପା ମା'ଙ୍କୁ କ୍ଷମା କରନ୍ତୁ । ତାଙ୍କ କୃତ ପାପର ଫଳ ସେ ଭୋଗିବେ, ଆପଣ କାହିଁକି ସ୍ତ୍ରୀ ବଧ କରି ପାପ ଅର୍ଜିବେ ।

ପୁଅ ଯାଇଁ ବଡ଼ ରାଣୀଙ୍କ ଗୋଡ଼ତଳେ ପଡ଼ନ୍ତେ ବଡ଼ ରାଣୀ ପୋକ ମୁହଁରେ ଲୁଣ ଦେଲାପରି ନିଜର କୁକର୍ମ ଚିନ୍ତା କରି ଲଜ୍ଜିତ ହେଲେ । ପୁଅକୁ କହିଲେ, ବାବୁ ମୁଁ ବଡ଼ ଦୋଷୀ । ରାଜମହିଷୀ ହେବାର ଯୋଗ୍ୟା ନୁହେଁ ।

ସେଠୁଁ ରାଜା ସୈନ୍ୟସାମନ୍ତ ନେଇ ରତ୍ନପୁରରେ ପହଞ୍ଚନ୍ତେ ରତ୍ନପୁର ରାଜା ଭୟ କଲେ । ରାଜା ରତ୍ନପୁର ରାଜାଙ୍କୁ କୋଳାଗ୍ରତ କରି କହିଲେ, ତୁମର ଜେମା ମୋର ବୋହୂ । ସେ ମାଳ ପୁଅ

ନୁହେଁ, ମୋର ପୁଅ । ତହୁଁ ସମସ୍ତ ଘଟଣା କହିଗଲେ । ଏକଥା ଶୁଣନ୍ତେ ରଜା ରାଣୀଙ୍କର ଆନନ୍ଦର ସୀମା ରହିଲନାହିଁ ।

ବହୁତ ଯାନଯୌତୁକ ଦେଇ ଝିଅକୁ ଶ୍ୱଶୁର ପାଖରେ ବିଦାୟ କଲେ । କଳଙ୍ଗ ରଜା ପୁଅ ବୋହୂ ନେଇ ସୁଖରେ ରାଜ୍ୟ ଚାଳିଲେ । ସାନରାଣୀ ପାଟରାଣୀ ହେଲା, ଓ ବଡ଼ରାଣୀକୁ ନଅର ବାହାରେ ରଖାଇଲେ ।

ମୋ କଥାଟି ସରିଲା
ଚାଲଧୂଆ ରସ ନାକରେ ପକାଇ
ଛିଙ୍କ ଛିଙ୍କ ହୋଇ ମଲା ।

—:o:—

## ପଞ୍ଚକୁମାରଙ୍କ କଥା

ମଣିପୁରର ରଜା ଯଜ୍ଞେଶ୍ୱର ପ୍ରବଳ ପରାକ୍ରମୀ ଧାର୍ମିକରଜା । ତାଙ୍କ ରାଣୀଙ୍କ ନାମ ଭାନୁମତୀ । ରଜାଙ୍କର ପାଞ୍ଚଟି ପୁଅ, ପ୍ରତାପ କୁମାର, ପ୍ରମୋଦ କୁମାର, ପ୍ରଦୀପ କୁମାର, ପ୍ରବୀର କୁମାର, ପ୍ରସନ୍ନ କୁମାର ଏପରି ପାଞ୍ଚଜଣ—ରଜା ବୁଢ଼ା ହେଲେଣି, ରାଜ୍ୟ ଖବର ଭଲମନ୍ଦ ବୁଝିବାକୁ ସେ ଆଉ ପାରୁନାହାନ୍ତି ।

ଦିନେ ରଜା ମନ୍ତ୍ରୀଙ୍କ ଡାକି କହିଲେ, ମନ୍ତ୍ରୀ ଏ ଆମ୍ଭର ପାଞ୍ଚ ପୁଅ ମଧ୍ୟରେ କିଏ ବେଶୀ ଯୋଗ୍ୟ । ଯେ କି ଭଲଭାବରେ ରାଜ୍ୟ ଶାସନ କରି ସୁଖରେ ପ୍ରଜା ପାଳିବ, ତୁମ୍ଭେ ବାଛ, ତାକୁଇ ରାଜ୍ୟ-ଭାର ଦେବା । ମନ୍ତ୍ରୀ ଏକଥା ଶୁଣି ଭାବିଲେ ବଡ଼ପୁଅର ତ ରାଜ-ଗାଦି ପାଇବା କଥା, ରଜା ଏହା କ'ଣ କହୁଛନ୍ତି— ହଉ ବୋଲି କହି ରଜାଙ୍କୁ କହିଲେ ମଣିମା, ମୋତେ କିଛି ସମୟ ଦେଲେ ମୁଁ

ସବୁ ପୁଅଙ୍କୁ ସଙ୍ଗରେ ନେଇ ପରୀକ୍ଷାକରି ଗ୍ରାମୁରେ ଆସି ଜଣାଇବ । ଏ ପାଞ୍ଚଭାଇଯାକ ମୋ ସଙ୍ଗରେ ବିଦେଶ ଯିବେ—ସେଠାରେ ବୁଦ୍ଧି ପରୀକ୍ଷା କରିବାକୁ ମୋତେ ସୁବିଧା ହେବ ।

ମନ୍ତ୍ରୀଙ୍କ କଥାମତେ ରାଜା ପାଞ୍ଚ ପୁତ୍ରଙ୍କୁ ଡାକି କହିଲେ—ତୁମ୍ଭେମାନେ ମନ୍ତ୍ରୀଙ୍କ ସଙ୍ଗରେ ବିଦେଶ ଯାଅ । ବିଦେଶ ଫେରିଲେ ବୁଦ୍ଧି ଆସିବ, ଅନେକ କଥା ଶିଖିପାରିବ । ଏହା କହି ଧନରତ୍ନ ଖାଇବା ପଦାର୍ଥ କିଛି ଦେଲେ । ମନ୍ତ୍ରୀ ଶୁଭସମୟ ଦେଖି ପାଞ୍ଚ ଭାଇଙ୍କୁ ସଙ୍ଗରେ ନେଇ ବିଦେଶ ଗଲେ ।

ଯାଉଁ ଯାଉଁ ବାଟରେ କେତେ ବଣ କେତେ ପର୍ବତ କେତେ ନଈ କେତେ ନାଳ କେତେ ଝରଣା କେତେ ଗ୍ରାମ କେତେ କେତେ ନଗର ପଡ଼ିଲା । ଏମାନେ ସବୁ ଦେଖି ଦେଖି ଯାଉଥାନ୍ତି । କେତେ କେତେ ଜାଗାରେ କେତେ କେତେ ନୂଆ କଥା ଶିଖିଲେ । ନୂଆ ନୂଆ ଜିନିଷ ଦେଖିଲେ । ବେଳକୁବେଳ ତାଙ୍କର ଅକ୍କଲ ବେଶି ହୋଇଗଲା ।

ମନ୍ତ୍ରୀ ସେଠୁଁ ପାଞ୍ଚ ଭାଇଯାକଙ୍କୁ ନେଇ ଯାଉଁ ଯାଉଁ ଜୟପୁରରେ ପହଞ୍ଚିଲେ । ସେ ଗୋଟିଏ ବଡ଼ ନଗର । କୋଠା ବାଡ଼ିରେ ପୂର୍ଣ୍ଣ । ଦୋକାନ ବଜାର ଧାଡ଼ି ଧାଡ଼ି ହୋଇ ଲାଗିଛି । ଦେଖି ଦେଖି ଗାଁ ମୁଣ୍ଡ ଶିବଦେଉଳ ପାଖକୁ ଗଲେ । ଦେଉଳ ପାଖରେ ଗୋଟିଏ ଚଉତରା ଅଛି, ଚଉତରା ଚାରିପାଖଯାକ ବଡ଼ ବଡ଼ ବେଲ ଗଛ । ସନ୍ଧ୍ୟାବେଳେ ଯେଉଁଠି ଗ୍ରାମ ଲୋକ ବସି ଗପ୍‌ଜଗାଇ ଥାଆନ୍ତି । ମନ୍ତ୍ରୀ ପାଞ୍ଚଭାଇଙ୍କୁ ନେଇ ସେଠାରେ ରହିଲେ । ଦୁଇଦିନ ବିତିଗଲା, ତୃତୀୟଦିନ ମନ୍ତ୍ରୀ କହିଲେ—ତୁମେ ପାଞ୍ଚଭାଇଏ ଏକାଠି ନ ରହି ଭିନ୍ନ ଭିନ୍ନ ଆଡ଼େ ଯାଅ । ଯେ ସବୁଠୁଁ ଭଲ କାମ କରି ଫେରିବ ସେ ସମସ୍ତଙ୍କ ଠାରୁ ମାନ୍ୟ ପାଇବ । ସେଇ ଦେଶର

ରାଜା ହେବ । ମୁଁ ତୁମ୍ଭମାନଙ୍କ ଫେରିବାଯାଏ ଏହିଠାରେ ଥିବ । ଆଉ ବିଳମ୍ବ ନ କରି ଫିଲିଏ ଯାଅ । ଭଲବେଳ ଦେଖି ପାଞ୍ଚଭାଇ ଯାକ ଅନୁକୂଳ କରି ଗଲେ ।



## ପ୍ରତାପ କୁମାର

ରାଜାଙ୍କର ବଡ଼ପୁଅ ପ୍ରତାପ କୁମାର ଯାଉଁ ଯାଉଁ ଗୋଟିଏ ରାଜ୍ୟରେ ପହଞ୍ଚିଲେ । ଦେଖିଲେ ସେ ନଗର ଲୋକେ ଭୟରେ ହାଲ ହୋଳ ପକାଉଛନ୍ତି । ଯୁଆଡ଼େ ଗଲେ ଗୃହର ପାଞ୍ଚଜଣ ସାଙ୍ଗ ହୋଇ ଠେଙ୍ଗା ବାଡ଼ି ହତିଆର ଧରି ଯାଉଛନ୍ତି ଖବର କଣ ବୁଝିଲେ—ଗୋଟିଏ ଗଣ୍ଡା ସେଠାରେ ଅନେକ ଲୋକଙ୍କୁ ମାରି ପକାଇଲାଣି । ଗଣ୍ଡା ଉତ୍ପାତରେ କେତେ ଲୋକ ବଧିର ହୋଇ ଗଲେଣି । ଘରେ ଗଣ୍ଡା ରଡ଼ ପଶିଯିବ ବୋଲି କବାଟ ତଳକାଠ ହାତରେ କାତୁଅ ଗୁଡ଼ିଛନ୍ତି । ପ୍ରତାପ କୁମାର ଏହାଦେଖି ଗାଁମୁଣ୍ଡ ଠାକୁରାଣୀଙ୍କ ମନ୍ଦିର ତଳଚଉରା ଉପରେ ଶୋଇଲେ । ମାଳୁଣୀ ଫୁଲ ଦେବାକୁ ଆସି ଡାକିଲା, କିଏ ବିଦେଶୀ ଶୋଇଛ ଗାଁକୁ ଚାଲ । ଏଠାରେ ଗୋଟିଏ ଗଣ୍ଡା ମାତିଛି । ଅନେକ ଲୋକଙ୍କୁ ମାରିଲାଣି, ତୁ ବାବୁ ଏଠାରେ ଏକୁଟିଆ ରହ ନାହିଁ । ପ୍ରତାପକୁମାର କହିଲା, ତୁ ଠାକୁରାଣୀଙ୍କୁ ଫୁଲ ଦେଇଯାଅ । ମୁଁ ଏଠାରୁ ଯିବନାହିଁ । ଏହାକହି ଶୋଇଲା—ତାପରେ ବ୍ରାହ୍ମଣ ଆସିଲା । ସେ ବେଗବେଗ କରି ଫେରିଲାବେଳେ ଏ ଟୋକାକୁ ଦେଖିଲା । ଯେତେ ଡାକିଲା ଏ ଶୁଣିଲା ନାହିଁ । ସେଠୁ ସେ ଭିତରକୁ ଚାଲିଗଲା । ସନ୍ଧ୍ୟା ହେବାରୁ ପ୍ରତାପକୁମାର ନିତ୍ୟକର୍ମ ସାରି ଠାକୁରାଣୀଙ୍କ ଦର୍ଶନକରି ଗୋଟାଏ ଗଛ ଉପରେ ଚଢ଼ି ଗଣ୍ଡାକୁ ଶର ମାରିବ ବୋଲି

ଜଗି ରହିଲା । ଦୈବଯୋଗକୁ ଗଣ୍ଡା ଆସି ସେହି ଚଉତରା ଉପରେ ଗଡ଼େଇ ଡଡ଼େଇ ହେଲା । ଏଣେ ଗଡ଼ୁଥାଏ ତେଣେ ଗର୍ଜନ ଛାଡ଼ୁଥାଏ । ପ୍ରତାପ କୁମାର ଏହି ସମୟରେ ଗଛ ଉପରୁ ଗଣ୍ଡାର କାନ ମୁଣ୍ଡକୁ ଲକ୍ଷ୍ୟ କରି ଶର ମାରିଲା । ଶରଯାଇ ଗଣ୍ଡାର ଗୋଟାଏ ପାଖ କାନମୁଣ୍ଡାରେ ଗଳି ଆର କାନମୁଣ୍ଡାରେ ବାହାରି ଗଲା । ସେଠାରେ ଗଣ୍ଡା ଭୟଙ୍କର ଗର୍ଜନ କରି ଛଟିପିଟି ହୋଇ ମରିଗଲା । ଗଣ୍ଡାର ବାଡ଼ଆ କଚଡ଼ାରେ ଠାକୁରାଣୀଙ୍କ ଯକା ମଣ୍ଡପର କେତେଗୁଡ଼ାଏ ଅଂଶ ଭାଙ୍ଗିଗଲା ।

ଏହି ଗଣ୍ଡା ଗୋଟିଏ ରାଜବଂଶକୁ ମାରି ପକା କରିଦେଇଥିଲା । ସେ ରାଜାର ଗୋଟିଏ ଝିଅ ଥିଲା ଗଣ୍ଡା ତାକୁ ଧରି ସଙ୍ଗରେ ଆଣି ଠାକୁରାଣୀଙ୍କ ମନ୍ଦିର ପାଖରେ ଥିବା ପର୍ବତ ଗୁହାରେ ରଖିଥିଲା । ଫଳମୂଳ ଆଣି ତାକୁ ଖାଇବାକୁ ଦେଉଥିଲା । ଯେତେବେଳେ ତାକୁ 'ଛଅବରଷ, ଚଣ୍ଡା ତାକୁ ଆଣିଥିଲା । ସେ ଗୁହାରେ ବାରବର୍ଷ ରହିଲାଣି, ସେ ରଜାଝିଅ ତ ବଡ଼ ହେଲାଣି—ସେ ପ୍ରତିଜ୍ଞା କରିଥିଲା ଯେ ଏ ଗଣ୍ଡାକୁ ମାରିବ ସେ ମୋର ବର ହେବ । ସେ ଧନୀ ହେଉ ବା ଗରିବ ହେଉ, ରଜା ହେଉ ବା ଚଣ୍ଡାଳ ହେଉ, ଛୁଆଟି ହେଉ ବା ବୁଢ଼ା ହେଉ ଯାହାହେଉନା କାହିଁକି ସେ ମୋର ବର ହେବ । ଗଣ୍ଡାର ଗର୍ଜନ ଶୁଣି ସେ ଗୁହାଭିତରୁ ବାହାରକୁ ଆସି ଦେଖିଲା, ଚଣ୍ଡା ମରିପଡ଼ିଛି । ଏ ଟୋକା ଧନୁରେ ଗୁଣ ଦେଇ ସେଠି ଠିଆ ହୋଇଛି । ତା ନାମ ମେନକା, ମେନକା ପଚାରିଲା, ଏ ଗଣ୍ଡାକୁ ଆପଣ ମାରିଛନ୍ତି କି ? ପ୍ରତାପ କହିଲା ହଁ, ମୁଁ ମାରିଛି । ତହୁଁ ମେନକା ତା'ର ନିଜର ପରିଚୟ ଦେଇ ଠାକୁରାଣୀଙ୍କ ସାକ୍ଷୀକରି ଏ ଟୋକା ବେକରେ ବରଣମାଳା ଦେଇ କହିଲା—

ହେ ପରଗ୍‌ଣ ଧନ ପୂରଣ କରିଛ
ମୋହର ମନ ବାସନା ।
ଚରଣେ ଶରଣ ପଶୁଅଛୁ ମୁହିଁ
ବରଣକୁ କର ହେନା ॥
ଏ ପାପିଷ୍ଠ ଗଣ୍ଡା କରୁ ଉଦ୍ଧାରିଛ
ଧନୁ ଧରି ହସ୍ତେ ତବ ।
ଦାସୀ ପଦେ ସ୍ଥାନ ଦେଇ ଏ ଦାସୀରେ
କାମନା ପୂର୍ଣ୍ଣ କରିବ ॥

ସେଠୁଁ ପ୍ରତାପ କନ୍ୟାର ଶୋଭା, ବିନୟସ୍ୱଭାବ, ନମ୍ରତା ଦେଖି ତା ହାତଧରି ମଣ୍ଡପକୁ ଉଠିଗଲା । ଦୁହେଁଯାକ ସେ ମଣ୍ଡପରେ ଶୋଇଲେ । ସକାଳୁ ସୁଲୁସୁଲିଆ ପବନ ବହୁଥାଏ । ଏ ଦୁହିଁଙ୍କ ନିଦ ଲାଗିଗଲା । ଦେବୀଙ୍କ ପୂଜାପଣ୍ଡାତ ସକାଳୁ ଆଳତି କରିବାକୁ ଆସିଲା । ଦେଖିଲା ଟୋକାଟୋକି ଦୁହେଁ ଶୋଇଛନ୍ତି । ଗଣ୍ଡା ମରି ପଡ଼ିଛି । ସେ ଠାକୁରାଣୀ ପୂଜା ସାରି ଗାଁକୁ ଯାଇ ହୁଳହୁଳି କରିଦେଲା । ନଗରର ସମସ୍ତେ ଶୁଣି ଆନନ୍ଦରେ ନାଚି ଉଠିଲେ । ଏ ଖବର ରାଜାଙ୍କ କାନକୁ ଗଲା । ରାଜା, ମନ୍ତ୍ରୀ, କଟୁଆଳ ପ୍ରଜାମାନଙ୍କ ସହିତ ବାଜା ବଜାଇ ଦଉଡ଼ିଆସିଲେ । ବାଜା ଶବ୍ଦରେ ଏ ଟୋକାଟୋକିଙ୍କ ନିଦ ଭାଙ୍ଗିଗଲା । ଏମାନେ ଉଠି ଦେଖନ୍ତି ତ ସ୍ୱାଙ୍କର ଚାରିପାଖରେ ଲୋକେ ଜମା ହୋଇଛନ୍ତି ।

ରଜା ପଚାରିଲେ, ଏ ଗଣ୍ଡାକୁ କିଏ ମାରିଲା ? ପ୍ରତାପ କହିଲା ମୁଁ ମାରିଲି ।

ରାଜା ପଚାରିଲେ ତୁମ ନାଁ କଅଣ, ତୁମ ବାପାଙ୍କ ନାଁ କଅଣ ? ଘର କେଉଁଠାରେ ? ଏ ସ୍ତ୍ରୀ ପିଲାଟି ତୁମର କଣ ହେବ ?

ଏକଥା ଶୁଣି ପ୍ରତାପ କହିଲା, ଏ ମୋର ସ୍ତ୍ରୀ । ମୋର ଘର କାଞ୍ଚନ ଦ୍ୱୀପରେ । ବାପା ମା ନାଁ ଏଣୁ ତେଣୁ କହିଲା ।

ସମସ୍ତେ ଦେଖୁଥାନ୍ତି ରାଜା ଭାରି ଖୁସି, କିନ୍ତୁ ରାଜାଙ୍କ ମନ ପୋଡ଼ିଜଳି ଯାଉଥାଏ, ଭାବୁଥାନ୍ତି ମୋ'ର ଦେଶକୁ ଆସି ଏତେ ସୁନ୍ଦରୀ ଝିଅଟିଏ ନେଇଅଛି । ମୁଁ ଏ ରାଜ୍ୟର ରାଜା ହୋଇ ଭୋଗ କରିପାରିଲି ନାହିଁ । ବନ ପୋଡ଼ିଗଲେ ସିନା ସମସ୍ତେ ଜାଣନ୍ତି, ମନ ପୋଡ଼ିଗଲେ କିଏ ଜାଣିବ । ସେଠୁ ରାଜା କୁହାବୋଲାକରି ଦୁଇଜଣଙ୍କୁ କୋଠାଘର ଦେଇ ସେଠାରେ ରଖାଇଲେ । ଖାଇବା ଶୋଇବାସକାଶେ ସବୁ ସରଞ୍ଜାମ ପଠାଇଦେଲେ । ସେଠି ପ୍ରତାପ କୁମାର ତାର ସ୍ତ୍ରୀ ନେଇ ରହିଲା ।

କେତେଦିନ ଗଲାପରେ ରାଜା ତାକୁ ଡାକି କହିଲେ, ଖାଲି ବସିବା କାହିଁକି, ତୁମେ ତ ବୀରପୁରୁଷ ଆମ ନଗର ପହରାଦେବା କାମରେ ରୁହ । ମାସକୁ ଶହେଟଙ୍କା ଦରମା ପାଇବ । ରାଜାଙ୍କ ମନ ତ ଲାଗିଛି । ଟୋକାକୁ ଅକଡ଼ଆରରେ ରଖିଲେ ତା ସ୍ତ୍ରୀକି ଭୋଗ କରିବେ । ଏକଥା ଟୋକା ଜାଣିପାରି ଘରେ ମେନକାକୁ କହିଲା, ଦେଖ ରାଜା ମତେ ତ ନଗର ପହରାରେ ରଖିଲେ । ମୁଁ ବୁଝୁଛି ତାଙ୍କର ତୁମ ଉପରେ ଭାରି ନିଘା । ମୁଁ ତ ରାତିସାରା ପହରାରେ ରହିବି, ରାଜାଙ୍କୁ ସୁବିଧା ମିଳିବ । ତାହା ଶୁଣି ମେନକା କହିଲା—

ନିଜେ ଯେ ନିଜକୁ ଜଗିବ କିଏ କରିବ କିସ ।
ସତୀ ଚରିତ୍ରରେ କଳଙ୍କ ଦେବ କେଉଁ ନରେଶ ।
ପଦ୍ମ ସରୋବରରେ ସୂର୍ଯ୍ୟତ ଲକ୍ଷେ ଯୋଜନେ ଥାଇ ।
ତା ପ୍ରୀତିକୁ କେହି ସଂସାରେ କୁହ ଭାଙ୍ଗି ପାରଇ ॥

ଚନ୍ଦ୍ରଙ୍କ ସଙ୍ଗରେ କୁମୁଦ ଭବ ହେଉ ରାତିରେ ।
ଫୁଟିଉଠେ ମହା ଆନନ୍ଦେ ଭବ ଥରେ ଚିତ୍ତରେ ॥
ଏଥିପାଇଁ ଚିନ୍ତା ନ କର ଆହେ ପରାଣ ଧନ ।
ଏ ଗୁନ୍ଥ କି ରଜା, ଚହସ୍ତ ହେବେ ଦେବତାଗଣ ॥
ଶୈବ୍ୟା ଦମୟନ୍ତୀ ଚରିତ ଶୁଣିଥିବ ଶାସ୍ତ୍ରରେ ।
ସେଥିପାଇଁ ଚିନ୍ତା ନକର ତୁମ୍ଭେ କିଛି ମନରେ ॥
ନିଅ ଏହି ମଲ୍ଲୀ ହାରଟି ରଖିଥିବ ଗଳାରେ ।
ମଉଳିଲେ ତୁମ୍ଭେ ଜାଣିବ ଭ୍ରଷ୍ଟା ହେଲି ଅଚିରେ ॥

ପ୍ରତାପକୁମାର ମଲ୍ଲିହାରଟି ବେକରେ ପକାଇ ନଗର ପହରୀ ଦେଉଥାଏ । ଦିନେ ରାଜା ପଚାରିଲେ, ତୁମେ ଏ ଫୁଲହାରଟି କେଉଁଠୁ ଆଣିଲ । ମୁଁ ଦେଖୁଛି ଏ ତ ମଉଳୁ ନାହିଁ । ପ୍ରତାପ କହିଲା—ଏ ଫୁଲହାରଟି ମୋ ସ୍ତ୍ରୀ ମୋତେ ଦେଇଛି । କହିଛି ଯେଉଁଦିନ ଏ ଫୁଲ ମଉଳିବ ଜାଣିବ ମୋର ସତୀତ୍ୱ ନଷ୍ଟ ହେଲା ବୋଲି ।

ରାଜା ଏକଥା ଶୁଣି ଚୁପ୍‌ରହିଲେ । ଗୁପ୍ତରେ ମନ୍ତ୍ରୀକି କହିଲେ ତୁମ୍ଭେ ଯାଇ ପରୀକ୍ଷାକରି ଆସ । ମନ୍ତ୍ରୀ, ବେଶଭୂଷା ହୋଇ ସନ୍ଧ୍ୟାକୁ ଗଲେ । ଦାସୀକି କହିଲେ, ତୁମ୍ଭ ସାନ୍ତାଣୀକି କହିବ ତାଙ୍କ ସ୍ୱାମୀଙ୍କ ସଙ୍ଗାତ ଆସିଛନ୍ତି । ଦାସୀ ଏକଥା କହନ୍ତେ ମେନକା ଭାବିଲା ଏ ମୋ ସତୀତ୍ୱ ନଷ୍ଟ କରିବାକୁ ଆସିଛି । ହଉ ଦେଖାଯିବ । ଏହା ଭାବି ଦାସୀକି ବେଶଭୂଷା ପିନ୍ଧାଇ କହିଲା, ତୁ ତାଙ୍କୁ ଆଦରକରି ବସାଇବୁ, ସେ ଯାହା କହିବେ କରିବୁ ।

ମନ୍ତ୍ରୀତ ଖୁସିଆ ହୋଇ ଯାଇଛନ୍ତି । ଦାସୀ ଆସି ଆଦରକରି ଘରକୁ ନେଲା । ପାନ, ଜଳଖିଆ ଦେଲା । ଦୁହେଁଯାକ ଖୁସିରେ ଗପସପ କଲେ, ମନ୍ତ୍ରୀ ତା ମନକାମନା ବତାଇ ଦେଇ ରାତି

ଅଧିକୁ ଖୁବ ଆସିଲେ । ମନ୍ତ୍ରୀଙ୍କଠାରୁ ଦାସୀ ତାଙ୍କର ନାମାଙ୍କିତ ମୁଦିଟି ରଖିଥାଏ । ସକାଳୁ ରାଜା ସଭାରେ ମନ୍ତ୍ରୀକି କହିଲେ, ଜଣ ଦେଲ । ମନ୍ତ୍ରୀ ସବୁକଥା କହିଗଲେ । ରାଜା ଦେଖିଲେ ଫୁଲହାରଟି ସେହିପରି ଅଛି । ସେଠୁ ଭାବିଲେ ଏ କଥାର କିଛି ମୂଲ୍ୟ ନାହିଁ ।

ତାପରେ ରାଜା ମେନକା ପାଖକୁ ଦୂତ ପଠାଇଲେ । ଦୂତ ଯାଇ ମେନକାକୁ ବହୁତ କହିବାରୁ ମେନକା କହିଲା ହଉ ଆସିବେ । ରାଜା ଦୂତଠାରୁ ଏକଥା ଶୁଣି ରାତି ଘଡ଼ିକ ବେଳକୁ ଗଲେ । ମେନକା ଦାସୀକୁ ସଜାଇ ଦେଇ ଠିକ୍ କରି କହିଥାଏ । ତୁ ଖୁବ୍ ଆଦର କରିବୁ ରାଜାଙ୍କୁ ।

ରାଜା ପହଞ୍ଚନ୍ତେ ଦାସୀ ଖୁବ୍ ଖାତିର କଲା । ରାଜାତ କାମ ଲୋଭରେ ଯାଇଛନ୍ତି । ଭଲ, ମନ୍ଦ, ପାପ, ପୁଣ୍ୟ, ଧର୍ମ, ଅଧର୍ମ ବିଚାରୁଛନ୍ତି କଏ ? ଦାସୀ ସହିତ ପ୍ରେମାଳାପ କରି ଫେରିଆସିଲେ ।

ସେଠାରେ ଜଣେ ବଡ଼ ମହାଜନ ଥିଲା । ତାର ନାମ ଧନେଶ୍ୱର । ସେ ମଧ୍ୟ ମେନକାକୁ ଦେଖି ଲୋଭ କରିଥାଏ । ସେ ଲୋକ ପଠାଇ ଠିକ୍ କରି ଅନେକ ଧନରତ୍ନ ପଠାଇଲା । ମେନକା ସେହିପରି ଦାସୀକି ବେଶଭୂଷା ସହିତ ଆଳାପ କରାଇଲା । ସେ ଖୁସି ହୋଇ ଗଲାବେଳେ ତାର ବେକର ହାରଟି ରଖିଦେଲା ।

ହେଲେ ସେଠାକାର କୋଟୁଆଲ ଲୋଭକରି କପରି ମେନକା ସଙ୍ଗରେ ମାତିବ ବୋଲି ଚେଷ୍ଟା କରୁଥାଏ । ରାତିରେ ପହଞ୍ଚି କହିଲା ମୁଁ ବହୁତ ଆଶାକରି ଆସିଛି । ଆଜି ରାତିକ ଏଠାରେ ରହିବି, ଏ କଥା ଶୁଣି ମେନକା ମଧ୍ୟ ଦାସୀଦ୍ୱାରା ତାର ମନବୋଧ କରାଇ ତାଠାରୁ ପଗଡ଼ି ସନ୍ତକ ରଖି ତାକୁ ବିଦାକଲା ।

ସୁଆଦ ପାଇ ତ ସମସ୍ତଙ୍କ ମନ ଲଗିଛି । ଦିନେ ମେନକା ପ୍ରତାପକୁ କହିଲା, ମୁଁ ଗୋଟିଏ ଦିନ କଣ୍ଟ କରିଦେଉଛି । ରାଜା ମନ୍ତ୍ରୀ, ମହାଜନ, କଟୁଆଳ ଏମାନଙ୍କୁ ଉଚିତ୍ ଶିକ୍ଷା ଦେଇ ଏଠୁ ଚାଲିଯିବା । ପ୍ରତାପ କହିଲା ଠିକ୍ ଭାବିଛ । ନଇଲେ ଘର କରି କୁମ୍ଭୀର ସଙ୍ଗେ ବିବାଦ ହୋଇ କେତେଦିନ ରହିହେବ ।

ସେତିକି ରାଜାଙ୍କୁ ଯାଇ ଦୂତୀ କହିଲା, ଶନିବାର ଦିନ ରାତି ଚତୁର୍ଥ ପ୍ରହରକୁ ଆସିବ । ମନ୍ତ୍ରୀକି କହିଲା ତୁମେ ରାତି ୩ୟ ପ୍ରହରକୁ ଆସିବ, ମହାଜନକୁ କହିଲା ତୁମେ ୨ୟ ପ୍ରହରକୁ ଆସିବ କଟୁଆଳକୁ କହିଲା ତୁମେ ପ୍ରଥମ ପ୍ରହରକୁ ଆସିବ । ସେହିଦିନକୁ ସମସ୍ତଙ୍କୁ କଣ୍ଟ ଦେଲା ।

ସ୍ୱାମୀକି କହିଲା, ତୁମ୍ଭେ କିଛି ଆଲକାତରା ଓ କିଛି ତୁଳା ଆଣି ମୋତେ ଦେଇଯାଇଥିବ । ମୁଁ କହିବ ମୋର ସ୍ୱାମୀ କଥା କୁହା ମାଙ୍କଡ଼ ଧରି ଯାଇଛନ୍ତି । ତୁମେ ମଧ ରାଜାଙ୍କଠାରୁ ଅନୁମତି ନେଇ ମାଙ୍କଡ ଧରିବାକୁ ମିଛରେ ଯିବ । ଏହିପରି ଦୁହେଁଯାକ ଠିକ୍ କରିନେଲେ ।

କଣ୍ଟଦିନ ପ୍ରତାପ ରାଜାଙ୍କ ଅନୁମତି ନେଇ କଥାକୁହା ମାଙ୍କଡ଼ ଧରିବାକୁ ଗଲା ।

ସନ୍ଧ୍ୟା ପ୍ରଥମ ପ୍ରହରରେ କଟୁଆଳ ପହଞ୍ଚନ୍ତେ ମେନକା ତାକୁ ଖଟ ଉପରେ ବସାଇ କଥାବାର୍ତ୍ତା ହେଉ ହେଉ ପ୍ରଥମ ପ୍ରହର ଶେଷ ହେଲା । ଏତିକିବେଳେ ମହାଜନ ପହଞ୍ଚିଗଲା । ମହାଜନ ଦୁଆର ମୁହଁରେ ଡାକନ୍ତେ କଟୁଆଳ କହିଲା, ମୁଁ କଅଣ କରିବି, ସେଠୁ ମେନକା କହିଲା, ତୁମେ ଏ ଆଲକାତରା କୁଣ୍ଡରେ ପଶି ସେଠୁ ବାହାରି ତୁଳା କଡ଼େଇରେ ପଶିଯାଅ । ତୁମ ଦେହଯାକ

ଭୁଲା ଲଗି ରହିବ । କେହି ଚହ୍ନି ପାରିବେ ନାହିଁ । କହୁଆଲ ସେଇଆ କରିବାରୁ ମାଙ୍କଡ଼ ପରି ଦେଖାଗଲା ।

ସେ ସେହି ଭୁଲାକଢ଼େଇରେ ପଶି ଅନାଇଥାଏ । ଏଣେ ମହାଜନକୁ କବାଟ ଫିଟାଇ ଦେବାରୁ ସେ ଆସି ଖଟଉପରେ ବସିଲା । ତା ସଙ୍ଗେ କଥାବାର୍ତ୍ତା ହେଉ ହେଉ ଦ୍ୱିତୀୟ ପ୍ରହର କଟିଗଲା । ଏହି ସମୟରେ ମନ୍ତ୍ରୀ ଆସି ପହଞ୍ଚି ଡାକନ୍ତେ ମହାଜନ କହିଲା, ମନ୍ତ୍ରୀ ତ ଆସିଲେଣି ମୋତେ ଲୁଚାଅ । ସେଠୁ ମେନକା କହିଲା, ତୁମେ ଏ ଖଟତଳେ ବସିଲେ ମୁଁ ଟୋକେଇ ଢୋଡ଼ାଇ ତା ଉପରେ ବଇଠା ରଖିଦେବି, ତୁମେ ହଲଚଲ ହେବନାହିଁ । ମହାଜନ ଟୋକେଇ ଭିତରେ ପଶିଲା, ତା ଉପରେ ବଇଠା ରଖା ହେଲା । ସେଠୁ କବାଟ ଫିଟାଇ ଦେବାରୁ ମନ୍ତ୍ରୀ ଭିତରକୁ ଆସିଲେ । ମନ୍ତ୍ରୀଙ୍କର ଖାତିର ତ ବେଶୀ, ତାଙ୍କୁ ବସାଇ ପାନ ତମାଖୁ ଦେଇ ଖୁସିଗପ ଆରମ୍ଭ କରିଲେ । ମନ୍ତ୍ରୀ ଗପସପ କରୁକରୁ ତୃତୀୟ ପ୍ରହର ଯାଇ ଚତୁର୍ଥ ପ୍ରହରକୁ ରଜା ଦୁଆରମୁହଁରେ ହାଜର । କବାଟରେ ହାତମାରି ଡାକନ୍ତେ ମନ୍ତ୍ରୀ ରଜାଙ୍କ ପାଟିଶୁଣି ଗୁମାଆ । କହିଲେ, ମୋତେ କେଉଁଠି ଲୁଚାଇଦିଅ । ସେଠୁ ମେନକା ମନ୍ତ୍ରୀଙ୍କୁ ହେଁସ ଭିତରକୁ ପୂରାଇ ହେଁସ ଗୁଡ଼ାଇ ଡୋରିବାନ୍ଧି ଖଟପାଖ କାନ୍ଥରେ ଆଉଜାଇଦେଲା ।

ରଜାଙ୍କୁ ଦୁଆର ଫିଟାଇଦିଅନ୍ତେ ରଜା ଭିତରକୁ ଗଲେ, ଯାଇ ଖଟଉପରେ ଲମ୍ବହୋଇ ପଡ଼ିଗଲେ । ରଜାଙ୍କର ଖାତିର ବଡ଼ । ରଜା କହିଲେ, ଆଜି ଡେରି କାହିଁକି, ରାତି ପାହିଯିବ ଯେ, ତୁମ ସ୍ୱାମୀ କଥାକୁହା ମାଙ୍କଡ଼ପାଇଁ ଯାଇଛନ୍ତି, ସେ ଆସିଗଲେ ସବୁ ଭଣ୍ଡୁର ହୋଇଯିବ । ମେନକା ଭାବିଲା ଏତ ରଜା ଗୋଜା, ଏହାଙ୍କୁ କଥାରେ ଭୁଲାଇ ଗୋଟାଏ ଶିକ୍ଷାଦେବି । ଏହାଭାବି ରଜାଙ୍କୁ

କହିଲା, ମୋର ଗୋଟାଏ ବ୍ରତ ଅଛି, ତେଣୁ ମୁଁ କାହାକୁ ଦେହ ଦେଇନାହିଁ । ଆଜି ସେ ବ୍ରତ ମୋର ପୂର୍ଣ୍ଣହେବ । ଆପଣ ଘୋଡ଼ା-ହେବେ ମୁଁ ଆପଣଙ୍କ ଉପରେ ବସି ଖଟ ଗୃହପାଖ ସାତଥର ବୁଲିବି, ଏତେବେଳେ ମୋର ବ୍ରତ ପୂର୍ଣ୍ଣହେବ, ମୁଁ ଦେହଦେବି । ଏହା ମା ଠାକୁରାଣୀଙ୍କ ଆଦେଶ । ରାଜା ତ କାମଲୋଭରେ ଆତୁର । କାମୁକ ଲୋକର ତ କିଛି ହିତାହିତ ଜ୍ଞାନ ନଥାଏ । ରାଜା ରାଜି ହୋଇଗଲେ । ମେନକା ରାଜାଙ୍କ ପିଠିରେ ବସିଲା, ରାଜା ଚିକଏ ଆଣ୍ଠେଇ ବୁଲିଲେ ସେ ଝାଡ଼ୁରେ ପାହାରେ ଦିଏ । ରାଜା ସାତଥର ବୁଲିଲାବେଳକୁ ତାଙ୍କର ଆଣ୍ଠୁ ଗଣ୍ଠି ଛିଡ଼ି ରକ୍ତ ନହୁନୁହାଣ, ନାକରୁ ତଳେ ସିଙ୍ଗାଣି ବାହାରିଲାଣି । ଏହିସମୟରେ ରାଜାଙ୍କ ନଅରରେ ସକାଳ ହେବା ବାଜାବାଜିବାରୁ ରାଜା ଆଉ ରହୁଛନ୍ତି ? ଇଜ୍ଜତ ଭୟରେ ଉଠି ଚଳ ଇଆସି ନଅର ଭିତରେ ପଶିଗଲେ । ମଜାକରିବାକୁ ଯାଇ ଯେଉଁ ସଜାପାଇଛନ୍ତି ଆଣ୍ଠୁ କହୁଣୀ ପୋଡ଼ୁଛି ପିଠିରେ ଗୁଞ୍ଜୁଣୀମାଡ଼ । ମାଡ଼ଚକ୍ରିଆ ବି ପୋଡ଼ୁଛି । ଜଲଦି ସ୍ନାନ ନିତ୍ୟକର୍ମ ବଢ଼ାଇ ସଭାକୁ ଆସିଲେ ।

ରାଜା ଯିବାରୁ ହେଁସ ଫାଟାଇଦେଇ ମନ୍ତ୍ରୀ ଚମ୍ପଟ୍ । ଚୋକେଇ କାଢ଼ିଦେବାରୁ ମହାଜନ ଚମ୍ପଟ୍ । କଟୁଆଳ ଯାଉଛି କୁଆଡ଼େ । ସେତ ସବୁ ଦେଖିଛି । ଏହି ସମୟରେ ପ୍ରତାପ ପହଞ୍ଚିଯିବାରୁ ମେନକା କଟୁଆଳକୁ ଦେଖାଇଦେଲା । ଧୁଦୈପାକ ହସି ହସି ବେଦମ୍ ।

ପ୍ରତାପ କୁମାର ଖଣ୍ଡେ ଶଗଡ଼ଗାଡ଼ି କରି କଟୁଆଳକୁ ବସାଇ ରାଜାଙ୍କ ସଭାକୁ ବାହାରିଲା । ମେନକା କହିଲା, କାଲି ରାତିରେ ରାଜା ମନ୍ତ୍ରୀ ଯେଉଁ ଅବସ୍ଥା ପାଇଛନ୍ତି ଆମର ଆଉ ଏଠାରେ ରହିବା ଉଚିତ ନୁହେଁ । ମୁଁ ସବୁ ଧନରତ୍ନ ସଙ୍ଗରେ ନେଇ ନଈ ଆରପାଖ ତୋଟାରେ ଆପଣଙ୍କୁ ଅପେକ୍ଷା କରିଥିବି । ଆପଣ

ଏହାଙ୍କୁ ପଢ଼ାଇ ଦେଇ ଏଠାରୁ କୌଣସିମତେ ପଳାଇ ମୋ ସହିତ ଦେଖାହେଲେ ସାଙ୍ଗହୋଇ ଗୃହକୁ ଯିବା । ଏହିପରି ବିଚାର ଠିକ୍ କଲେ । ସେଠୁଁ ପଣ୍ଡିତ କଥାକୁହା ମାଙ୍କଡ଼ ନେଇ ସଭାରେ ପହଞ୍ଚିଲା ।

ରାଜା ପଚାରିଲେ, ଆରେ ନଗର ଦେବ ! ତୁ ତ କଥାକୁହା ମାଙ୍କଡ଼ ଆଣିବାକୁ ଯାଇଥିଲୁ—ଆଣିଲୁ—? ଆଜ୍ଞା ହଜୁର ଏହିପରି କଥାକୁହା ମାଙ୍କଡ଼ ଆଣିଛି । ଆପଣ ତାକୁ ପଚାରନ୍ତୁ । ସେଠୁ ରାଜା ପଚାରିଲେ ଆରେ କଥାକୁହା ମାଙ୍କଡ଼, ତୁ କେଉଁଠି ଥିଲୁ ; ତୋତେ ଏଠାକୁ କିପରି ଆଣିଲା । ଏସବୁ କଥା ଖୋଲିକରି କହ ?

ଏହା ଶୁଣି କଣ୍ଟୁଆଳ କହିଲା, ଶ୍ରୀମୁଖରେ ଜଣାଣ କରିବି—

ଆମ ରାଜା ଘୋଡ଼ା ହୋଇଥିଲେ ।
ଖଟ ଗୃହପାଖ ବୁଲୁଥିଲେ ॥
ମାଇପଟା ହୋଇଥିଲା ସବାର ।
ଗ୍ରାଞ୍ଜୁଣୀରେ ଦେଉଥିଲା ପାହାର ॥
ମନ୍ତ୍ରୀ ତ ଆମର ହେଁସ ଭିତରେ ।
ବନ୍ଧା ହୋଇଥିଲେ ଅତି ଯତ୍ନରେ ॥
ମହାଜନ ବାବୁ ଟୋକେଇ ତଳେ ।
ପଡ଼ିଥିଲେ ମୁଣ୍ଡେ ବଇଠା ଜଳେ ॥
ଦେଖ କଣ୍ଟୁଆଳ ମୂର୍ଖ ପାମର ।
ଏହିଦଶା ଥିଲା ସର୍ବ ମୋହର ।

ସଭାରେ ସମସ୍ତେ ମୁହଁ ଚାହାଁ ଚାହିଁ ହେଲେ, ଯେଝା କଥା ଶୁଣି ସେ ଲଜ୍ଜାରେ ମୁହଁକୁ ତଳକୁ କଲେ । କଣ୍ଟୁଆଳ ଚାକରକୁ କଟେଇରୁ ବାହାର କରିଦେଲେ । ସେ ଯାଇ ସାବୁନ ଲଗାଇ ଦୁଇ ଘଣ୍ଟାରେ ସଫାସୁତୁରା ହୋଇ ସଭାକୁ ଆସିଲା । ରାଜାଙ୍କର ତ ହିହ

ପୋଡ଼ୁଛି । ରଜା ହୁକୁମ ଦେଲେ ନଗର ପହରୀବାଲାଙ୍କୁ ନେଇ କଏଦରେ ରଖ । ପାପୀମାନେ ଖୋଜିଲାବେଳକୁ ନଗର ପହରୀବାଲାଙ୍କର ଚମ୍ପଟ । କୁଆଡ଼େ ବୋଲି କେତେ ଖୋଜିଲେ । ଆଉ ପାଇଲେ ନାହିଁ । ଗୃହଆଡ଼େ ଲୋକ ଦଉଡ଼ିଲେ । ନଈକୂଳରେ ପ୍ରତାପ କୁମାରକୁ ଦେଖି ଧରିନେଇ ରଜାଙ୍କ ହୁକୁମରେ କଏଦରେ ପୂରାଇଲେ ।

ଏଣେ ମେନକା ଅନାଇ ଅନାଇ ନ ଆସିବାରୁ ଭାବିଲା— ମୋର ସ୍ୱାମୀକି ଯେମାନେ ବନ୍ଦ କଲେ । ମୁଁ ଏଠାରେ ରହିବା ଭଲ ନୁହେଁ । ଏହା ଭାବି ସେ ବେଶ ବଦଳାଇ ଭିକାରୁଣୀ ବେଶ ଧରି ବୁଲିଗଲା ।

— ୧୦ —

## ପ୍ରମୋଦ କୁମାର

ପ୍ରତାପ କୁମାର ତଳଭାଇ ପ୍ରମୋଦ କୁମାର । ସେ ଆସି ଆସି ସେଇ ରଜା ନଗରରେ ପହଞ୍ଚିଲା । ଏଠାରେ ତା ଭାଇ କଏଦରେ ଅଛି ବୋଲି ସେ ଜାଣେନାହିଁ । ସେ କଅଣ କରିଛି ନଅରପାଖରେ ଯେଉଁ ଠାକୁରାଣୀ ଅଛନ୍ତି, ସେ ଠାକୁରାଣୀଙ୍କ ଦର୍ଶନ କରି ସେ ଗ୍ରାମରୁ ଡାଲି, ଚାଉଳ, ହାଣ୍ଡି, ଘିଅ, ଜାଳ, ଆଳୁ, ବାଇଗଣ ପ୍ରଭୃତି ଆଣି ଖାଇବ ବୋଲି ଗର୍ତ୍ତ ଏ ରୋଷେଇ ବସାଇଲା, ଭାତହେଲା ତରକାରୀ ହେଲା, ପ୍ରମୋଦ ସେସବୁ ନେଇ ଠାକୁରାଣୀଙ୍କ ପାଖରେ ଭୋଗ ଲଗାଇ ଖାଇ ସେହି ମନ୍ଦିର ବେଢ଼ାରେ ଶୋଇରହିଲା ।

ସେ ଦେଶର ରଜାଙ୍କର ପୁଅ ନାହିଁ, ଗୋଟିଏ କେବଳ ଝିଅ । ଝିଅଟିର ନାମ ମନୋରମା । ଝିଅଟିକୁ ଆସି ପନ୍ଦରବର୍ଷ ହେଲାଣି । ରଜାଝିଅ ପ୍ରତିଦିନ ସଖୀମାନଙ୍କ ସଙ୍ଗରେ ସେହି ଠାକୁରାଣୀଙ୍କ

ଦର୍ଶନ କରିବାକୁ ଯାଏ । ଠାକୁରାଣୀଙ୍କି ପୂଜା କରି ବର ମାଗେ । ମୋତେ ଗୋଟିଏ ସୁନ୍ଦର ଉତ୍ତମ ବର ଦିଅନ୍ତୁ । ଯେଉଁଦିନ ସେ ଟୋକା ଶୋଇଛି ରାଜାଝିଅ ସେଦିନ ଦର୍ଶନକୁ ଯାଇ ପୂଜା କଲାବେଳେ ଠାକୁରାଣୀ ପ୍ରସନ୍ନହୋଇ କହିଲେ, ମା ! ତୁ ମୋତେ ବହୁତ ସେବାକଲୁଣି, ଏହି ମଣ୍ଡପର ଉତ୍ତରଦିଗରେ ଯେଉଁ ପୁରୁଷ ହୋଇଛି ସେ ଜଣେ ରାଜାପୁଅ, ସେହି ତୋର ବର ହେବ । ତୁ କିଛି ବିଚାର ନ କରି ତାକୁ ବରଣମାଳା ଦେଇ ସ୍ୱାମୀରୂପେ ବରଣ କର । ଠାକୁରାଣୀଙ୍କ ଆଦେଶ ପାଇ ରାଜାଝିଅ ଭୋଗ ବଢ଼ାଇ ମନ୍ଦିରରୁ ଫୁଲମାଳ ଆଣି ଦେଖେ ତ ରାଜାପୁଅ ସମାହିତ ହୃଦରେ ଶୋଇଛି । ତାକୁ ଦେଖି ରାଜାଝିଅର ଆଖି ଝଲସିଉଠିଲା ।

ରଜାପୁଅର କନ୍ଦର୍ପ ସୁନ୍ଦର ରୂପ ଦେଖି ରଜଝିଅ ମୋହିତ ହୋଇଗଲା । କେତେବେଳେ ଧୈର୍ଯ୍ୟଧରି ସେଠାରେ ଉଭାହୋଇ ରହିଲା । ପ୍ରମୋଦ କୁମାର ଉଠିକରି ଦେଖେ ତ ତା ଆଗରେ ଦିବ୍ୟ ସୁନ୍ଦରୀ ରାଜକେମା ଓ ସଖୀମାନେ ଠିଆ ହୋଇଛନ୍ତି । ସେ ଉଠିକରି କହିଲା, ତୁମ୍ଭେମାନେ ଏଠି କାହିଁକି ଠିଆହୋଇଛ । ମୁଁ ତ ଜଣେ ବିଦେଶୀ, ମୋ'ସଙ୍ଗରେ ତୁମମାନଙ୍କର କଅଣ ଦରକାର ଅଛି ।

ରାଜାଝିଅ କହିଲା, ମୁଁ ତୁମ୍ଭଙ୍କୁ ଦେଖିଲାବେଳୁ ପତିପଦରେ ବରଣ କରିଛି । ତୁମ୍ଭେ ମୋତେ ହତାଶ କରନାହିଁ । ଏହା କହି ବରଣମାଳା ଏ ଟୋକାର ଗଳାରେ ଦେଇ ଗୋଡ଼ିଚଳେ ପଡ଼ି ସଖୀମାନଙ୍କ ସହିତ ନଅରକୁ ଗଲା । ସଖୀମାନଙ୍କୁ କହିଲା, ତୁମେମାନେ କାହାକୁ କିଛି କହିବ ନାହିଁ ।

ରାଜାଝିଅ ମା'ଙ୍କର ବିଶ୍ୱାସୀ ଦାସୀଙ୍କି କହିଲା, ମୋର ବିବାହସକାଶେ ସ୍ୱୟମ୍ବର କରନ୍ତୁ । ଦାସୀ ରାଣୀକି କହିଲା । ରାଣୀ ଯାଇ ରାଜାଙ୍କୁ କହିଲେ । ରାଜା ଶୁଣି ସବୁ ଦେଶକୁ ଖବର ପଠାଇ

ସ୍ୱୟମ୍ବର କଲେ । ସ୍ୱୟମ୍ବର ସଭାରେ ଅନେକ ଦେଶର ରାଜା ଓ ରାଜପୁତ୍ରମାନେ ଆସିଲେ । ଏ ରାଜାପୁଅ ମଧ୍ୟ ଯାଇ ଦେଖଣାହାରୀ ଦଳରେ ବସିଥାଏ ।

ରାଜାମାନେ କହିଲେ, ତୁମ୍ଭ ଝିଅକୁ ଆଣ । ଆଜ ବିଳମ୍ବ କାହିଁକ କରୁଛ । ମନୋରମା ବରଣମାଳା ଧରି ଆସିଲା । ସବୁ ରାଜା ଓ ରାଜପୁତ୍ରଙ୍କୁ ଦେଖି ଦେଖି ଗଲା । କାହାରିକି ବରଣମାଳା ଦେଲାନାହିଁ । ଏ ଟୋକାକୁ ଦେଖି ଏହାର ବେକରେ ବରଣମାଳା ଦେଲା । ସମସ୍ତେ ଛି ଛି କରି କରି ସେଠାରୁ ବାହାରିଗଲେ । ରାଜା ଓ ମନ୍ତ୍ରୀ ଏହା ଦେଖି ଦୁଃଖିତ ହୋଇ ଝିଅକୁ କହିଲେ, ମା ! ତୁ ଏପରି ଖ୍ରେଷ୍ଟ କାମ କାହିଁକି କଲୁ । ଝିଅ କହିଲା, ମୁଁ ପ୍ରତିଦିନ ଠାକୁରାଣୀଙ୍କୁ ପୂଜାକରେ, ତାଙ୍କର ଆଦେଶରେ ମୁଁ ଏହାଙ୍କୁ ବରଣମାଳା ଦେଇଛି ।

ରାଜା ଓ ମନ୍ତ୍ରୀ ଠାକୁରାଣୀ ନାଁ ଶୁଣି ଚୁପ୍‌ହୋଇ ଝିଅକୁ ପ୍ରମୋଦ କୁମାର ସଙ୍ଗେ ବାହାଘର କରିଦେଲେ । ଝିଅ ଜୋଇଁ ଘରେ ରହିଲେ । ରାଜାତ ବୁଢ଼ା, ସେ ଜୋଇଁଙ୍କ ରାଜଗାଦିରେ ବସାଇ ପାତ୍ର ମନ୍ତ୍ରୀ ପରିଜନ ପ୍ରଜାପାଟକଙ୍କୁ କହି ନିଜର ସ୍ତ୍ରୀଙ୍କୁ ସଙ୍ଗରେ ନେଇ ଅରଣ୍ୟକୁ ତପସ୍ୟା କରିବାକୁ ବାହାରିଗଲେ । ପ୍ରମୋଦ କୁମାର ସେଠାରେ ରାଜାହୋଇ ପ୍ରଜାମାନଙ୍କୁ ଖୁବ୍ ସୁଖରେ ପାଳି ରହିଲା ।

---

## ପ୍ରଦୀପ୍ତ କୁମାର

ପ୍ରମୋଦର ଚାଲଯାଇ ପ୍ରଦୀପ୍ତ କୁମାର ସେତ ଦେଶ ବୁଲି ଯାଉଛି । ଯାଉଁ ଯାଉଁ ଗୋଟିଏ ରାଜା ମୁଲକରେ ପହଞ୍ଚିଲା । ସେ ରାଜା ଗୋଟିଏ ଘରବଡ଼ିଆ ରାଜା । ସେ ରାଜାଙ୍କ ରାଣୀ ଓ ସେ

ଦେଶର ସେନାପତିଙ୍କ ସ୍ତ୍ରୀ ଦୁହିଁଙ୍କର ଦିନେ ଠାକୁର ମନ୍ଦିରରେ ସାକ୍ଷାତ ହେଲା । ପରସ୍ପର ଅନେକ ଗପସପ ହେଲେ । ଦୁହିଁଙ୍କର ଗର୍ଭ ହୋଇଥାଏ । ରାଣୀଙ୍କର ଯେତେ ମାସ, ସେନାପତିଆଣୀଙ୍କର ସେତିକ ମାସ । ରାଣୀ କହିଲେ, ଏ ଗର୍ଭରେ ମୋର ଯେବେ ପୁଅ ହୁଏ, ତୁମ୍ଭର ଝିଅ ହୁଏ, ଦୁହେଁଯାକ ବାହାହେବେ । ଯେବେ ମୋର ଝିଅ ତୁମ୍ଭର ପୁଅ ହୁଏ ତେବେ ଦୁହେଁଯାକ ବାହାହେବେ । ଦୁହିଁଙ୍କର ଝିଅ ହେଲେ ବା ପୁଅ ହେଲେ ସଙ୍ଗାତ ବସାଇବ । ଏହିପରି ସତ୍ୟ କଲେ ।

ଦଶମାସ ପରେ ରାଣୀଙ୍କର ଗୋଟିଏ ଝିଅ ହେଲା । ତା ନାଁ ଦେଲେ ସରୋଜନୀ । ଝିଅଟି ଶୁକ୍ଳପକ୍ଷ ଚନ୍ଦ୍ର ପରି ବଢ଼ିବାକୁ ଲାଗିଲା । ଝିଅର ଏକୋଇଶା ଦିନ ହଜାର ହଜାର ବ୍ରାହ୍ମଣ, ପଣ୍ଡିତ, ଜ୍ୟୋତିଷ, ପ୍ରଜା ପାଠକ ସମସ୍ତେ ଭୋଜନ କଲେ । କେତେ ପାଲା ହେଲା, କେତେ ତାମସା ହେଲା, ହାଟ ବାଟ ସବୁ ଜୁର ହେଲା । ଯେ ଝିଅକୁ ଦେଖିଲା ଝିଅ ରୂପ ଦେଖି ଘଣ୍ଟାଏ ଅନାଇଲା । ତେଣେ ସେନାପତିଙ୍କର ପୁଅ ହେଲା ଯେ ମାଂସ ପିଣ୍ଡୁଳାଟିଏ । ପୁଅ ହୋଇଛି ବୋଲି ସେନାପତି ପାଲାପୂଜା କରାଇଲେ, ବ୍ରାହ୍ମଣମାନଙ୍କୁ ଡାକି ଭୋଜନ ଦେଲେ, କେତେ ବାଜା ବାଜିଲା । ଯେଉଁମାନେ ଗଲେ, ପୁଅକୁ ଦେଖିବାକୁ କହିବାରୁ ସେମାନେ କହନ୍ତି ପୁଅ ବଡ଼ହେଉ ଦେଖିବ । ପୁଅକୁ ପଦାକୁ ଆଣିଲେ ମଣିଷ କବା ଗୁର, ଦେବତା ଲୋଭେଇପିବେ । ପୁଅ ଝିଅ ବଢ଼ୁଥାନ୍ତି । ଝିଅକୁ ଆସି ପନ୍ଦର ବରଷ ହେଲା । ରାଣୀ ରାଜାଙ୍କୁ କହିଲେ, ମୁଁ ସତ୍ୟ କରିଛି ସେନାପତିଙ୍କ ପୁଅସଙ୍ଗେ ବାହାକରିବାକୁ । ରାଜା ଶୁଣି କହିଲେ ତୁମ ମୁଣ୍ଡ କଣ ବିଗିଡ଼ଗଲାଣି । ସେ ମୋର ଚାକର, ମୁଁ ତା ସଙ୍ଗେ ବନ୍ଧୁବାନ୍ଧବ—ରାଣୀ ଏକାଜିଗର ଧରିଲେ ।

ମାଇପିଙ୍କ କଥା ତ ସବୁଦିନେ ବେଦର ଗାର । ତାଙ୍କ ଜିଦ୍ ତ ସବୁବେଳେ ରହେ, ରାଜା ବାଧହୋଇ ରାଜିହେଲେ ।

ରାଜା ବ୍ରାହ୍ମଣ ଜ୍ୟୋତିଷକୁ ଡକାଇ ବିଭା ଲଗ୍ନଧରି ସେନାପତିକି କହିପଠାଇଲେ ଏହିମାସ ୨୫ ବିବାହ ଲଗ୍ନ ଠିକ୍ ହେଲା, ତୁମ୍ଭେ ସଜଳ ହୋଇ ସେଇଦିନ ବରକୁ ନେଇ ଏଠାରେ ଆସି ପହଞ୍ଚିଲେ ରାତିରେ ବିବାହ କାର୍ଯ୍ୟ ଶେଷହେବ । ସେନାପତି ଏହାଶୁଣି ଗୁଣିଆ । ହଜାରେ ସୁନାମୋହରର ଥଳିଧରି ଭଲ ବରଟିଏ ଖୋଜୁଥାଆନ୍ତି । ଯାଉଁ ଯାଉଁ ପ୍ରତାପ କୁମାର ଯାଉଛି, ତାକୁ ଦେଖି ଡାକନେଲେ । ଘରେ ଭଲ ଭଲ ପଦାର୍ଥ ଖାଇବାକୁ ଦେଇ ଖୁବ୍ ଆଦରକରି କହିଲେ, ଆମେ ଗୋଟିଏ କଥା କହିବୁ ତୋତେ କରିବାକୁ ହେବ । ପ୍ରତାପ କୁମାର ରାଜିହେଲା ।

ସେନାପତି କହିଲେ, ରାଜାଙ୍କ ଝିଅସଙ୍ଗେ ମୋ ପୁଅର ବିବାହ ହେବ । ମୋର ପୁଅଟି ଜନ୍ମରୁ ମାଉଁସ ପିଣ୍ଡୁଳାଟିଏ । ତୁ ବରବେଶରେ ଯିବୁ, ବାହାହେବୁ । ମଧୁଶଯ୍ୟା ଦିନ ରାତିରେ ଉଠି ଚାଲିଯିବୁ ଏ ସୁନା ମୋହରତକ ନେଇ । ମୁଁ ତାପରେ ମୋର ବୁଦ୍ଧି ଖରଚକରି ଯେପରିହେଉ ରାଜାଝିଅକୁ ଆଣିବି ।

ବିବାହ ଦିନ ପ୍ରତାପକୁ ବରବେଶ କରି ସେନାପତି ସଙ୍ଗରେ ନେଲେ । ଏ ମାଉଁସପିଣ୍ଡୁଳାକୁ ମଧ ନେଇଥାନ୍ତି । ଏତ ଚାଲିହୁଏ ନାହିଁ, କଥା କହିପାରେନାହିଁ, ଖାଲି ଚେଁ ଚେଁ କେଁ କେଁ ହେଉଥାଏ । ବହୁତ ରୋଷଣିକରି ରାଜାଘରେ ପହଞ୍ଚିଲେ । ଯେ ବରକୁ ଦେଖିଲା ସେ କହିଲେ ଝିଅଲାଗି ବର ହୋଇଛି । ବାଟବରଣ ହୋଇଗଲା । ବାହାଘର ସରିଲା । ବ୍ରାହ୍ମଣମାନେ ବେଦଶ୍ଳୋକ ପାଠକରି ନବର ଫଟାଇ ଦେଉଥାନ୍ତି । ଯୁଆଖେଳ ହସ୍ତଗଣ୍ଠି ଫିଟା ପଞ୍ଚଗ୍ରାସୀ ସାରି

ବର କନ୍ୟାଙ୍କୁ ଘରକୁ ନେଇଗଲେ । ବନ୍ଦାଇବାକୁ ଯେତେ ମାଇପେ ଆସିଥିଲେ ସମସ୍ତେ ଦେଖି ଲୋଭେଇଗଲେ କହିଲେ—

ଧନ୍ୟ ଧନ୍ୟ ଏହି ଯୁବା ସୁନ୍ଦର
କେତେକାଳ ବସିଣ ବେଦବର ।
ଗଢ଼ିଲା ଏହାକୁ ରୂପ ଦେଖିଣ
କେଉଁ ସୁବର୍ଣ୍ଣ ରଖିବ ଠାଣ ।
ଗୁଣ୍ଡ ପକ୍ଷବାଡ ।
ବାଧା ହେବାକୁ ଯେ ହେବ ସବତ ।

ରାତିରେ ମଧୁଶଯ୍ୟା ଘରକୁ ବର ଗଲା । ପ୍ରଦୀପ୍ତ କୁମାରର ତ ପେଟ ପୋଡ଼ଯାଉଛି, ସେ ଯାଇ ଭୋକବଳକଳରେ ଖଟରେ ଶୋଇ ପଡ଼ିଲା । ତାପରେ ରାଣୀଝିଅ ଗଲା, ଏତ ଶୋଇଛି । କିଛି ନ କହିବାରୁ କନ୍ୟା ଭାବିଲା ଯାହାକୁ ଶୋଷକରେ ସେ ପିନା ପାଣି ପାଖକୁ ଯାଏ, ଏଠି ଓଲଟା ଦେଖୁଛି ପାଣି ଶୋଷୀ ପାଖକୁ ଯିବାକୁ ପଡ଼ିଲା । ରାଜାଝିଅ ଗୋଡ଼ତଳେ ବସି ଗୋଡ଼ରେ ହାତ ଦଅନ୍ତେ ପ୍ରଦୀପ୍ତ କୁମାର ଚେଇଁଉଠି କହିଲା, ହେ ପ୍ରିୟେ କଥାରେ କହନ୍ତି ଭୋକେ ଓଡ଼ିଆ କାନ୍ଦଯାଏ । ମୋର ତ ପେଟ ପୋଡ଼ୁଛି ମୁଁ କଅଣ କହିବ ? ମୋତେ କିଛି ଖାଇବାକୁ ଦିଅ ।

ଭୋକେ ପୋଡ଼େ ପେଟ
ଲାଗଇ ଉଚାଟ
ମନତ ନୁହଁଇ ସ୍ଥିର,
କି କହିବି ଆହ୍ ।
ଖାଦ୍ୟ ଦିଅ ତୁହି
ପ୍ରାଣ ହେଉ ଶାନ୍ତ ମୋର ।

ରାଜାଝିଅକୁ କିଛି ବୁଦ୍ଧି ଦିଶିଲାନାହିଁ । ସେ ଦେଖିଲା ବରଣ ଡାଲରେ କିଛି ଅରୁଆଗୁଡ଼ାକ ଅଛି, କଲସନଡ଼ିଆ ଅଛି, ଦୋମ

କାଠଅଛୁ, ତାକୁ ଆଣି ବ୍ରେସେଇକରି ଖାଇବାକୁ ଦେଲା । ପ୍ରଘାପ୍ତ କୁମାର ଖାଇସାରିବାରୁ ତା ମନ ଥଣ୍ଡା ହେଲା । ସେଠୁଁ ସେ ରାଜାଝିଅ ସଙ୍ଗରେ ବାହାରକଲା । ବାହାର ଶେଷରେ ରାଜାଝିଅକୁ ନିଦ ହୋଇଗଲା । ପହାନ୍ତା ହେବାଜାଣି ପ୍ରଘାପ୍ତ କିଛି ନପାଇ କଳାପାଣ୍ଡି କଳାରେ କାନ୍ଥରେ ଲେଖିଦେଲା ।

ସରଗ ସୁଧାକୁ ଦେଇଥିଲ ବନ୍ଧୁ
ନିମିଷକ ପାଇଁ ମୋତେ
ମୋର ଖଣ୍ଡ ତପେ ଖଣ୍ଡ ବଚନାକୁ
ହରିନଏ ସାଥେ ସାଥେ ।
ଏ ଜୀବ ଦଶାରେ ତୁମ୍ଭସଙ୍ଗେ ପ୍ରିୟା
ଏତକ ମୋ ଦେଖା ସହ୍ୟ
ନେଇଛୁ ମେଲାଣି ଆଗୋ ହୃଦମଣି
ନ ଭୁଲିବ ଦୟା ବନ୍ଧୁ ।

ଏତକ ଲେଖିଦେଇ ସେ ଘରୁ ବାହୁଡ଼ିଆସନ୍ତେ ସେନାପତି ମୋହର ବୁଜୁଳାଧରି ବୁଲୁଥିଲେ, ତାକୁ ମୋହର ଥଳ ଧରାଇ ଦେଇ ବିଦାକରିଦେଲେ । ଜେମାକୁତ ନିଦ ହୋଇଛି । ସେନାପତି ମାଉଁସପିଣ୍ଡୁଳାଟି ନେଇ ଜେମା ଖଟରେ ରଖିଦେଇ ସେଠାରୁ ଚାଲିଆସିଥିଲେ । ପ୍ରଘାପ୍ତ କୁମାର ଅତରଚ୍ଛିଆ ଦଉଡ଼ି ଅନେକଦୂର ଯାଇ ଗୋଟିଏ ଧର୍ମଶାଳାରେ ଆଶ୍ରୟ ନେଲା । ରାଜାଝିଅର ନିଦ ଭାଙ୍ଗନ୍ତେ ସେ ଦେଖିଲା ତାର ସ୍ୱାମୀ ନାହାଁନ୍ତି, ମାଉଁସପିଣ୍ଡୁଳାଟି ପଡ଼ିଛି । ଜେମା କାନ୍ଦ କାନ୍ଦ ଅଥୟ । କାନ୍ଥରେ ତାଙ୍କର ନଜର ପଡ଼ିଗଲା, ଲେଖାକୁ ଦେଖି ଜେମା ଅବାକ୍ ।

ଏଣେ ସେନାପତି ହୁରିଚ୍ଛୁଡ଼ୁଛନ୍ତି । କନ୍ୟା ଶୀଘ୍ର ବିଦାକର, ପାଟିରେ କହାଇ ଦେଉଛନ୍ତି ।

ଦାସୀମାନେ ଘରଭିତରେ ପଶି ଦେଖିଲେ, ଜେମା କାନ୍ଦୁଛନ୍ତି ଗୋଟାଏ ମାଂସପିଣ୍ଡୁଳା ଖଟଉପରେ କେଁ କେଁ ହେଉଛି । ଏ ଘଟଣା ଦେଖି ଜେମାକୁ ଯେତେ ପଚାରିଲେ ଜେମା କିଛି କହିଲେ ନାହିଁ । ଏହା ପ୍ରଘଟ ହେବାରୁ ସେନାପତି କହିଲେ, ତୁମ ଝିଅଟା ଡାଆଣୀ,ଗର୍ଭଭିତରେ ମୋ ପୁଅର ରକ୍ତଶୋଷି ଏ ଅବସ୍ଥା କରିଛି । ସେଠୁଁ ରାଜା ରାଣୀ ସେଘରକୁ ଗଲେ । ଝିଅକୁ କାରଣ ପଚାରିବାରୁ ଝିଅ କାନ୍ଦିଲେଖାକୁ ଦେଖାଇଦେଲା । ଲେଖା ଦେଖି ରାଜା ଆସି କହିଲେ, ସେନାପତି ତୁମର ଭଲଦଶା ଅଛିତ ଏ ମାଂସ ପିଣ୍ଡୁଳାକୁ ନେଇ ଏଠୁ ପଳାଅ, ଆଉ ମୁହଁବାଳିଙ୍ଗି କରନାହିଁ । ଏତ ଗୃହକରଲୋକ କେତେକଡ଼ାରେ ଗଣ୍ଡାଏ । ଜାନମୁଣ୍ଡା ଆଉଁସି ଆଉଁସି ପିଣ୍ଡୁଳାକୁ ନେଇ ଘରକୁ ଚାଲିଆସିଲା ।

ଜେମା କହିଲେ, ତୁମେମାନେ ମୋତେ ଆଉ କିଛି କୁହନାହିଁ । ମୁଁ ମୋର ନିଜ ସ୍ୱାମୀକି ନ ପାଇଲା ପର୍ଯ୍ୟନ୍ତ କଠୋର ଭୈରବୀବ୍ରତ କରିବି । ଦେବୀ ଦେଉଳପାଖରେ ମୋପାଇଁ ଘର କରିଦିଅ, ମୁଁ ସେହିଠାରେ ରହି ବ୍ରତ କରିବ । ଝିଅକଥା ଶୁଣି ରାଜା ସବୁ ସୁବିଧା କରିଦେବାରୁ ଜେମା ଦାସୀ ପରିବାର ନେଇ ସେଠାରେ ସନ୍ନ୍ୟାସୀଣୀ ବେଶଧରି ଭୈରବୀ ବ୍ରତକଲେ ।

ଏଣେ ପ୍ରତାପ କୁମାର ମୋହରଥଳି ଧରି ଦଉଡ଼ୁଛି । ଯାହୁଁ ଯାଉଁ ବଣ ଜଙ୍ଗଲ ପଡ଼ିଲା । ଏ ବହୁ କଷ୍ଟରେ ବଣ ଜଙ୍ଗଲ ପାଇହୋଇ ଯେଉଁ ରାଜ୍ୟରେ ଏହାର ଭାଇ ରାଜା ହୋଇଛି ସେହିଠାରେ ଗୋଟାଏ ପିଣ୍ଡାରେ ବାଟଚଲା ପରିଶ୍ରମରେ ଶୋଇ ପଡ଼ିଲା । ସେ ଗୋଟିଏ ମାଲୁଣୀ ଘର । ସେ ମାଲୁଣୀକି ବୟସ ସତର ବରଷ ହେବ, ତାର ଗେରସ୍ତ ମରିଛି । ସେ ସକାଳୁ ଉଠି ଦୁଆରମୁହଁକୁ ଆସି ଦେଖିଲା ଉତ୍ତମ ସୁନ୍ଦର ଟୋକାଟିଏ ଶୋଇଛି

ତା ମୁଣ୍ଡ ଉପରେ ଗୋଟିଏ ବୁଜୁଲା ଥୁଆହୋଇଛି । ସେ ବୁଜୁଲାଟି ଘରକୁ ନେଇ ଫିଟାଇ ଦେଖିଲା ସୁନାମୋହରର ଗୁଣ୍ଡାଏ । ସେତକ ଘରେ ରଖି ଦେଇଆସି ପ୍ରଦ୍ୟୁମ୍ନ କୁମାରର ସୁନ୍ଦର ରୂପ ଦେଖି ଲୋଭହୋଇପଡ଼ିଲା । ତାସଙ୍ଗେ ବ୍ୟବହାର କରିବ ବୋଲି ତା ମନ ଛଟପଟ ହେଲା । ପ୍ରଦ୍ୟୁମ୍ନ ମୁହଁପାଖରେ ଗୋଟାଏ କଳାଫୁଲ ମନ୍ତ୍ରକରି ଧରନ୍ତେ ପ୍ରଦ୍ୟୁମ୍ନ କୁମାର କଳାମେଣ୍ଢା ହୋଇଗଲା । ସେତ କାଉଁରୁ ଦେଶ ପରା, ପଥର ପାଣି ହୋଇଯିବ, ଏ ଟୋକା କେବା ଛାର । ଦିନରେ ମେଣ୍ଢାକରି ରଖେ; ରାତିରେ ଧଳାଫୁଲ ଶୁଙ୍ଘାଇଦେଇ ପୁରୁଷକରି କୋଳରେ ଧରି ମଉଜ କରେ । ଏହିପରି ପ୍ରଦ୍ୟୁମ୍ନ କୁମାର ସେଠାରେ ବନ୍ଧନରେ ପଡ଼ିରହିଲା ।

ଏଣେ ଚିତ୍ରକୁମାରର ସ୍ତ୍ରୀ ମେନକା ଯାଉଁ ଯାଉଁ ଅନେକ ଦୂର ଚାଲିପରେ ସ୍ୱର୍ଗର ପରୀଙ୍କ ସଙ୍ଗରେ ଦେଖା ହେଲା । ପରୀମାନଙ୍କୁ ଦେଖି ଏ ନିଜ ଦୁଃଖ ଜଣାନ୍ତେ ସେମାନେ କହିଲେ ତୁ ଏ ମାଳାଟି ନେ, ଏ ମାଳା ବେକରେ ପକାଇଲେ ପୁରୁଷ ବେଶ ହେବୁ, ମାଳା କାଢ଼ିଦେଲେ ତୋ ନିଜରୂପ ହେବୁ । ଏ ଯାଇ ଯେଉଁଠାରେ ଏହାର ଶ୍ୱଶୁର ରାଜା ହୋଇଛି ସେ ଦେଶର ଗୋଟିଏ ମାଲୁଣୀ ଘରେ ଆଶ୍ରୟନେଇ ରହିଲା । ନିତି ନିତି ନଗ୍ରକୂଳ ଠାକୁରାଣୀଙ୍କ ଦର୍ଶନକୁ ଯାଏ ।

—:*:—

## ପ୍ରବୀର କୁମାର

ତା ତଳଭାଇ ପ୍ରବୀର କୁମାର ଯାଉ ଯାଉ ଅନେକ ଦେଶ ଅନେକ ନଦୀ, ବନ, ପର୍ବତ ବାଟରେ ପଡ଼ିଲା । ଏ ଟୋକା ଚାଲୁଥାଏ । ଯାଉ ଯାଉ ବାଟରେ ଅଗନାଅଗନ୍ଥି ବନସ୍ତ ପଡ଼ିଲା । ସେହି ବନସ୍ତରେ ଗୋଟିଏ ଜାତିଆ ମଣିଷ ଅଛନ୍ତି, ସେମାନଙ୍କର

ଚୋଡ଼ନାହିଁ କେବଳ ଲଙ୍ଗୁଡ଼ାଏ ଅଛି । ସେମାନେ ଚାଲି କରିପାରି ପାରନ୍ତି ନାହିଁ ଲଙ୍ଗୁଡ଼କୁ ଗୋଟାଏ ଡାଳରେ ଗୁଡ଼ାଇ ଆରଡ଼ାଳକୁ କୁଦିପଡ଼ନ୍ତି । କେହି ମଣିଷ ଯିବାର ଦେଖିଲେ, କୁଦାଟାପର ତାକୁ ଡାକନ୍ତି, ସେ ପାଖକୁ ଗଲେ ତା ଉପରକୁ କୁଦିପଡ଼ି ତାକୁ ନଖରେ ଚିରି ମାରି ଖାଇଯାଆନ୍ତି । ଏଘଟଣା ତାଙ୍କର ମୁହଁଭଙ୍ଗିରୁ ଏ ଟୋକା ଜାଣିପାରି ଏକବାର ସେଠୁଁ ଦଉଡ଼ ଚଳାଇଗଲେ, ଯାଉଁ ଯାଉଁ ଦେଖିଲେ ଗଛକୁ ଗଛ ଘଷିହୋଇ ନିଆଁ ଲାଗି ବଣବୁଦାରେ ଅନେକ ସ୍ଥାନ ଜଳୁଛି । ଖରାଦିନ ଦିପହରରୁ ଗଡ଼ିଗଲାଣି । ଏ ଟୋକା ଶୋଷରେ ପାଣି ଖୋଜି ଖୋଜି ଯାଉଛି, ଦେଖିଲା ଗୋଟାଏ ପୋଖରି ସେ ପୋଖରିରେ ପାଣିମୁନ୍ଦାଏ ପିଇ ଉପରକୁ ଆସି ଦେଖିଲା ଆଗରେ ନିଆଁ ଲାଗିଛି । ଦୁଇଟି ଗଣ୍ଡଭେରଣ୍ଡ ଚଢ଼େଇଛୁଆ ସେ ନିଆଁ ମଝିରେ ଉଡ଼ି ଆସିପାରୁ ନାହାନ୍ତି । ଏ ଟୋକା ଭାବିଲା ଆହା ଚଢ଼େଇଛୁଆ ଦୁଇଟି ମରିଯିବେ । ଏହା ଭାବି ପଗଡ଼ି ଫିଟାଇ ତାକୁ ଓଦାକରି ପାଣି ସର ସର ହୋଇ ନିଆଁକୁ କୁଦି ଗଲା । ଚଢ଼େଇଛୁଆ ଦୁଇଟିକୁ ଧରି ପୁଣି କୁଦାମାରି ଏ ପାଖକୁ ଆସି ଦେଖିଲା ଯେ ଚଢ଼େଇଛୁଆ ଦୁଇଟି ନିଆଁ ତାତିରେ ଚଳପଳ ହୋଇଛନ୍ତି । ତାଙ୍କୁ ପାଣିପିଆଇ ତାଙ୍କ ଉପରେ ପାଣି ସିଞ୍ଚିବାରୁ ସେମାନେ ସଚେତ ହୋଇଉଠିଲେ । ତହୁଁ ସେମାନଙ୍କୁ ବୁଦା ପାଖରେ ରଖି ନିଜେ ଗଛରେ ବିଶ୍ରାମ ନେଲା, ଥଣ୍ଡାପବନ ପୋଖରି ଜଳ । ଏ ଟୋକାକୁ ଆରାମ ଲାଗିବାରୁ ଶୋଇପଡ଼ିଲା । ତାକୁ ନିଦ ହୋଇଗଲା । ସନ୍ଧ୍ୟାହେବାକୁ ଘଣ୍ଟାଏବେଳ ଅଛି ଚଢ଼େଇ ଦୁଇଟି ବାହୁଡ଼ିଆସି ବସାରେ ଦେଖନ୍ତି ତ ସେଠାରେ ଛୁଆ ନାହାନ୍ତି ଓ ନିଆଁ ଦାଉ ଦାଉ ହୋଇ ଜଳୁଛି, ଭାବିଲେ ଆମ ଛୁଆ ନିଆଁରେ ପୋଡ଼ିମଲେ । ଚାରିଆଡ଼େ ଅନାଇ ଦେଖିଲେ ବୁଦାମୂଳେ ଛୁଆ

ଯୋଡ଼କ ଅଛନ୍ତି । ସେଠାକୁ ଯିବାରୁ ଚୁଆଏ କହିଲେ; ଆମେ ପୋଡ଼ଯାଉଥାନ୍ତୁ, ଏଇ ଲୋକଟି ଆମକୁ ରକ୍ଷାକରିଛି । ତହୁଁ ଗଣ୍ଡଭେରଣ୍ଡ ଦୁହେଁଯାକ ରାଜାପୁଅର ଗୋଡ଼ତଳେ ପଡ଼ିଲେ । ରାଜାପୁଅ ଉଠି ଅନାଇଦେଲା, ଚଢ଼େଇ ଦୁଇଟା ଗୋଡ଼ତଳେ ପଡ଼ିଛନ୍ତି । ସେଠୁ ସେ କହିଲା, ତୁମେ ଦୁହେଁ କାହିଁକି ପଡ଼ିଛ । ଚଢ଼େଇ କହିଲେ, ତୁମେ ଆମ ଛୁଆ ଦୁହିଁଙ୍କୁ ବଞ୍ଚାଇଛ, ଆମେ ପକ୍ଷୀଜନ୍ତୁ କ'ଣକହିବାରମ ନୋହୁଁ । ଆମେ ଛାର ପକ୍ଷୀଜନ୍ତୁ ଆପଣଙ୍କୁ କିଛି ଦେଇପାରିବୁ ନାହିଁ । ଏ ମଣିଟି ଦେଉଛୁ । ଏହାକୁ ଯେତେ ଧନ ମାଗିବ ଏ ଦେବ । ଇନ୍ଦ୍ର ଆମକୁ ଦେଇଥିଲେ, ଏହା ମର୍ତ୍ତ୍ୟରେ ମିଳେନାହିଁ । ଏହାକହି ଚଢ଼େଇ ଦୁଇଟି ଛୁଆ ଦୁଇଟିଙ୍କୁ ନେଇ ଚାଲିଗଲେ ।

ରାଜାପୁଅ ଉଠି ବାଟଚାଲିଲା । ଯାଇଁ ଯାଇଁ ଗୋଟିଏ ରାଇଜରେ ପହଞ୍ଚିଲା । ସେ ନଗରରେ ଗୋଟିଏ ମାଲୁଣୀଘର ଦେଖିଲା ସେ-ଜାଗାଟି ନିକାଞ୍ଚନ, ଏ ସେଠାରେ ଦମ୍ ମାରିଲା ।

କିଛି ସମୟ ପରେ ଗୋଟିଏ ଲେଖା ଦେଖିଲା । ଯେ ରସିକ ପୁରୁଷ ଏହାକୁ ଆସି ରାତିକ ରହି ଭୋଗକରିବ, ସେ ଲକ୍ଷେ ସୁନା ମୋହର ଦେବ । ଏ ଟୋକାକୁତ ମଣି ପ୍ରସାଦରେ କିଛି ଅଭାବ ନାହିଁ । ଏ ଟୋକା ଲେଖାଟିଦେଖି ଡାକିଲା । ଡାକଶୁଣି ଦାସୀ ଆସି କବାଟ ଫିଟାଇଦେଲା । ଫିଟାନ୍ତେ ଟୋକା ଦେଖିଲା ଘର ସୁନ୍ଦରୀ ସ୍ତ୍ରୀ । ମାଲୁଣୀ କହିଲା, ତୁମ୍ଭେ ଟଙ୍କା ଦେଇପାରିବ ତ ? ଏ କହିଲା, ହଁ ଦେଇପାରିବ, ସେଠୁ ଘରକୁ ଡାକନେଲା । ଦୁହେଁଯାକ ରାତିଟା ମଉଜମଜଲିସରେ କଟାଇଦେଲେ । ଏ ଟୋକା ସୁନା ମୋହର ଗଣିଦେଲା । ଏମିତି ଆଠଦଶଦିନ ଯାଏ ରହିଲା । ପ୍ରତିଦିନ ଟଙ୍କା ଦିଏ । ଟଙ୍କା ପାଇ ମାଲୁଣୀ ବେଶ୍ ଆଡ଼ମ୍ବରରେ ଚଳିଲା ।

ସେ ମାଲୁଣି ଘରକୁ ଯେଉଁ ରସିକମାନେ ଯାଉଥିଲେ ସେମାନେ ଯାଇ ରାଜାଙ୍କୁ କହିଲେ, କଏଜଣେ ବିଦେଶୀ ଧନୀଲୋକ ଆସିଛି ସେ ମାଲୁଣି ଘରେ ଅଛି । ଆପଣ ଜାଣନ୍ତି ଯେ, ଲକ୍ଷେ ଯେମୋହର ଦେବ ସେଠାରହିବ । ସେ ଧନୀ ଲୋକଟି ଦଶହଜ ଦେଇ ରହିଲାଣି ମାଲୁଣି ଟଙ୍କା ପାଇ ଆଉ କାହାକୁ ଖାତିର କରୁନାହିଁ । ରାଜା ଏହାଶୁଣି ନିଜ ଦେହରକ୍ଷୀ ନେଇ ଗଲେ । ମାଲୁଣି ରାଜା ଆସିବା ଜାଣି ଏ ଟୋକାକୁ କହିଲା, ତୁମ୍ଭେ ଖଟତଳେ ରହିଯାଅ । ରାଜା ଆସୁଛନ୍ତି କାଳେ ବାଉଡ଼ିପଡ଼ିବ । ଖଟତଳୁ ପଟା କାଢିଦେବାରୁ ସେ ଭିତର ଘରେ ପଶିଗଲା । କଟି କଟି ଅନ୍ଧାର । ଏ ଟୋକାପାଖରେ ଚ ମଣି ଅଛି, ମଣିକୁ ବାହାର କରନ୍ତେ ଦିନଭଳି ସବୁ ଆଲୁଅ ହୋଇଗଲା । ଏ ଦେଖିଲା ଗୋଟିଏ କଳାମେଣ୍ଢା ବନ୍ଧାହୋଇଛି, ସେ କାନ୍ଦୁଛି, ଧଳା କଳା ଫୁଲ ଦୋଟି ତା ପାଖରେ ଥୁଆ ହୋଇଛି କଳା ମେଣ୍ଢା ଗୋଡ଼ମାରି ଦେଖାଇ ଦେବାରୁ ଟୋକା ଧଳାଫୁଲଟି ଆଣି ତାକୁ ଶୁଙ୍ଘାଇଦିଅନ୍ତେ ସେ ନିଜ ଦେହ ପାଇଲା ଦୁହେଁଭାଇ ଚିହ୍ନା ଚିହ୍ନି ହୋଇ କୋଳାକୋଳି ହେଲେ । ପ୍ରଧାନ କହିଲା ଆଉ କିଛିଦିନ ଥୟ ଧର । ବର୍ତ୍ତମାନ କିଛି କଲେ ମୋ ଅବସ୍ଥା ବି ଖରାପ ହେବ । ଏହା କହି କଳା ଫୁଲଟି ଶୁଙ୍ଘାଇ ଦେବାରୁ ସେ ମେଣ୍ଢା ହୋଇଗଲା ।

ରାଜା ଆସି ମାଲୁଣିକୁ ପଚାରିଲେ । ଘରଅନ୍ଦେ ଖୋଜା ଖୋଜି କଲେ କିଛି ନ ପାଇବାରୁ ଫେରିଗଲେ । ମାଲୁଣି ରାଜାଙ୍କୁ ଖୁବ୍ ଆଦରରେ ବିଦାୟ କଲା ।

ରାଜା ଚାଲିଯିବାରୁ ମାଲୁଣି ପ୍ରଧାନକୁ କାଢି ଆଣିଲା । ମାଲୁଣି ଭାବୁଥାଏ, କି ଜିନିଷ ଏହା ପାଖରେ ଅଛି, ଏ ପ୍ରତିଦିନ ମୋତେ ଏତେ ଧନ ଦେଉଛି । ମୁଁ ତ ସନ୍ଧାନ କରି ପାଉନାହିଁ '

ଏଲା ସବୁ ପ୍ରଦୀପ କୁମାରକୁ ସରବତ ଦେଇ ପିଇବାକୁ । ସେ ସରବତରେ ବିଷ ମିଶାଇଥାଏ, ପ୍ରଦୀପ ସରବତ ଖାଇ ବାଘ୍ର ଜଙ୍ଗଲ ଜଳରୁ ତା ପାଟିରୁ ମଣିଟି ବାହାରିପଡ଼ିଲା । ମାଲୁଣି ମଣିଟି ରଖିଲା । ପ୍ରଦୀପ ତ ମୋହ ହୋଇପଡ଼ିଛି, ତାକୁ ଗୁଣ୍ଡାଙ୍କ ହାତ ଗୋଟିଏ ଜଙ୍ଗଲ ଗୁମ୍ଫାରେ ପକାଇଦେଇ ଆସିଲା । ମନେ କଲା ଏ ବଞ୍ଚିଲେ ଗୋଳମାଳ ହେବ । କଥା ଧରିପଡ଼ିବ । ମୂଳରୁ ଗଲେ ସଫା ।

କଥାରେ କହନ୍ତି—

ପରତେ ନ ଯିବ ବାଘ ସୁନାଘ ।
ପରତେ ନ ଯିବ ବିଟପି ନାଘ ॥
ସ୍ୱରୂପ ଛାଡ଼ି କୁରୂପ ନେଉ ।
ହାନ ବାଡ଼ି ନାହିଁ ମୂଳ ଭାଙ୍ଗଉ ॥

ଏ ତ ବିଟପି, ଯାହାର ଧନକୁ ଦରକାର ।

ପ୍ରଦୀପ, କୁମାର ଯେଉଁ ଗୁମ୍ଫାରେ ପଡ଼ିଥାଏ, ତା ପାଖ ଗୁମ୍ଫାରେ ଜଣେ ସାଧୁ ଥାନ୍ତି । ସେ ସନ୍ଧ ପାହାନ୍ତାରେ ବୁଲିବାକୁ ଆସିଲେ । ଦେଖିଲେ ଗୋଟିଏ ଦିବ୍ୟସୁନ୍ଦର ଟୋକା ଟିଏ । ତା ପାଖକୁ ଯାଇ ଦେଖିଲେ ସେ ବିଷଜ୍ୱାଳାରେ ମୋହହୋଇଛି ସେଠୁ ମନ୍ତ୍ର ପଢ଼ନ୍ତେ ସର୍ପମାନେ ଆସିଲେ । ସାଧୁ କହିଲେ, ଏହାର ବିଷ ହରଣ କର । ସର୍ପମାନେ ତା ଦେହରୁ ବିଷ ଶୋଷିବାକୁ ଲାଗିଲେ । କେତେବେଳେ ଏ ଟୋକା ଆଖି ଫିଟାଇଲା । ବିଷଯାକ ସବୁ ଝଡ଼ଯାନ୍ତେ ଟୋକା ଝ ଟ୍ଝଡ଼ ହୋଇ ଉଠିଲା । ଦେଖିଲା ଜଣେ ସାଧୁ ଓ ସର୍ପମାନେ । ବାବାଜୀଙ୍କ ଗୋଡ଼ତଳେ ପଡ଼ିଲା । ବାବାଜୀ କଲ୍ୟାଣ କରି କହିଲେ ଆରେ ବାବା ସେ ଗୋଟାଏ ବିଟପି

ତୋର ଦେବଦତ୍ତ ପଥର ସେ ରଖିଛୁ, ଆଜି ତୁ ସେଥିରେ ଲୋଭ କରନାହିଁ । ସେ ମାଇକିନିଆ କାହିଁରିଦେଶ ପଦ ଜାଣେ । ତୁ ତୋ ଜୀବନକୁ ନେଇ ପଳା । ଆଉ ବନସ୍ତରେ ବନଦୁର୍ଗା ଅଛନ୍ତି । ତୁ ତାଙ୍କୁ ସେବାକରି ବର ନେଇଯିବୁ । ଅଳପ ଦିନରେ ତୁମର ଦଶା ଫେରିବ । ପାଞ୍ଚଭାଇଯାକ ଚନ୍ଦ୍ରମାଚନ୍ଦ୍ର ହୋଇ ଘରକୁ ଯିବ ।

ସେଠୁ ପ୍ରବୀର ବାବାଜୀଙ୍କି ପ୍ରମାଣ କରି ବଣେ ବଣେ ଗଲା । ଉଦୁଉଦିଆ ଦ' ପହର ଖରା । ପ୍ରବୀର ଖରାରେ ଦଉଡ଼ି ଦଉଡ଼ି ବନଦୁର୍ଗାଙ୍କ ମନ୍ଦିର ପାଖରେ ପହଞ୍ଚିଲା । ସେଠି ପାଣି ମୁନ୍ଦାଏ ପିଇ ମା' ଦୁର୍ଗାଙ୍କ ସ୍ତୁତି କଲା ।

ମହିଷାସୁର ମର୍ଦ୍ଦିନୀ ଭକ୍ତଗଣ ଉଦ୍ଧାରିଣୀ
ସାହାହୁଅ ଏ ଅଧମ ପତି ।
ପଡ଼ିଛି ସଙ୍କଟେ ମାତ ନାହିଁ ମୋର ଭରସା ତ
ତୁମ୍ଭ ସାହା ପବିତ ଦୁହିତ ॥
ଅଶେଷ ଭୀଷଣୀ ମାତ ଫେଡ଼ ଭକତ ଦୁରିତ
ତୁମ୍ଭ ତ୍ରିଭୁବନ ରକ୍ଷାକାରୀ ।
ଯୋଡ଼ୁଅଛି ବେନିପାଣି କୃପାକର ନାରାୟଣୀ
ଆଦ୍ୟମାତା ଦେବୀ ଶାକମ୍ଭରୀ ॥

ଏହିପରି ସ୍ତବ କରନ୍ତେ ଦୁର୍ଗା ପ୍ରସନ୍ନ ହୋଇ କହିଲେ, ଆରେ ବତ୍ସ, ପଛକଥା ଆଉ ମନେ ପକା ନାହିଁ । ମୁଁ ବର ଦେଉଛି, ଯେତେବେଳେ ତୋତେ ବିପଦ ପଡ଼ିବ ତୁ ମୋତେ ସ୍ମରଣା କଲେ ମୁଁ ତୋର ସବୁ ବିପଦ ଖଣ୍ଡନ କରି ତୋତେ ରକ୍ଷାକରିବି ।

ପ୍ରବୀର କୁମାର ଦେବୀଙ୍କଠାରୁ ବରପାଇ ସେହି ବଣଭିତରେ ଥିବା ନଈ କୂଳେ କୂଳେ ଯାଉଛି । ସେ ନଈରେ ଗୋଟିଏ

ମହାଜନ ଡଙ୍ଗା ନେଇ ଯାଉଛି । ଦେଖା ଦହରେ ଜଣେ ନରବଳି ନଦେଲେ ଡଙ୍ଗା ବୁଡ଼ିଯିବ । ମହାଜନ ତ ଲୋକଙ୍କୁ ପଠାଇ ଜଣେ ମଣିଷ ଖୋଜାଉଛି । ମହାଜନ ଲୋକ ପ୍ରବୀରକୁ କେଉଁଠି ଦେଖି ଧରି ନେଇଗଲେ । ନାଆର ମଝି ଖୁଣ୍ଟରେ ବାନ୍ଧି ପକାଇଲେ । ମହାଜନକୁ ଡ଼ାକି ଆଣିଲେ । ମହାଜନ କହିଲା, ତୁମେ ବର୍ତ୍ତମାନ ବଳି ଯାଇବ ତୁମର କ'ଣ ଇଚ୍ଛା କୁହ ?

ଏ କଥା ଶୁଣି ପ୍ରବୀର କହିଲା, ତୁମେ ମୋତେ କାହିଁକି ବଳି ଦେବ ?

ମହାଜନ କହିଲା, ବଳି ନ ଦେଲେ ମୋ ବୋଇତ ଏ ଦେଖା ଦହରେ ବୁଡ଼ିଯିବ ।

ପ୍ରବୀର ଏହାଶୁଣି କହିଲା, ମୁଁ ବୋଇତରେ ବସିଥିବି, ତୁମ ବୋଇତ ଯେବେ ନିରାପଦରେ ଚାଲିଯାଏ ଆଉ ତ ବଳି ଦେବା ଆବଶ୍ୟକ ନାହିଁ । ଏ କଥାରେ ମହାଜନ ରାଜି ହେବାରୁ ପ୍ରବୀର ବନଦୁର୍ଗାଙ୍କୁ ସ୍ମରଣ କରି ନାଉରୀଙ୍କୁ କହିଲା, ବୋଇତ ମେଲି ଦିଅ, ତହୁଁ ନାଉରୀମାନେ ବୋଇତ ମେଲି ଦେବାରୁ ବୋଇତ ସୁରୁଖୁରୁରେ ଦେଖାଦହ ପାରି ହୋଇ ଚାଲିଗଲା । ଏହା ଦେଖି ମହାଜନ ଖୁସି ହୋଇ ପ୍ରବୀର ସଙ୍ଗରେ ସଙ୍ଗାତ ବସି ନୂଆ ଲୁଗା, ସୁନା କୁଣ୍ଡଳ ଦେଇ ନିଜ ପାଖରେ ରଖିଲା । ପ୍ରବୀର ବୋଇତରେ ରହିବାରୁ କାରବାର ଖୁବ୍ ବେଶୀ ହେଲା । ଏମିତି କେତେଦିନ ମହାଜନ ଯାଇ ଗୋଟିଏ ମୂଲକରେ ବୋଇତ ଲଗାଇଲା । ମାଲମତା କାରବାର ହେଲା । ମହାଜନ ଓ ପ୍ରବୀର ଆନନ୍ଦରେ ଥାଆନ୍ତି ।

ଦିନେ ସେ ମୂଲକର ରଜାଝିଅ ଜ୍ୟୋତ୍ସ୍ନା ନଈକୁ ଗାଧୋଇ ଆସି ପ୍ରବୀରକୁ ଦେଖି ତା ରୂପରେ ମୋହ ହୋଇ ମନରେ ପତି

ପଦରେ ବରଣ କରି ସ୍ନାନ ସାରି ଘରକୁ ଗଲା । ଘରେ ବାପା ମା'ଆଙ୍କୁ କହିବାରୁ ବାପା ମାଆ ରାଜି ହୋଇ ପ୍ରଶାରକୁ ଧରିନେଇ ଝିଅକୁ ବିଭା କରିଦେଲେ । ବାହା ହବାର କିଛିଦିନ ପରେ ପ୍ରଶାର କହିଲା, ମୋତେ ବିଦାକର । ରାଜା କହିଲେ, ମୋର ପୁଅ ନାହିଁ । ଗୋଟିଏ ବୋଲି ଝିଅ । ମୁଁ ଭାବିଥିଲି ରାଜ୍ୟରେ ତୁମକୁ ରାଜା କରି ମୁଁ ବାନପ୍ରସ୍ଥ କରିବି । ପ୍ରଶାର କହିଲା, ଆମେ ପାଞ୍ଚ ଭାଇ ଆସିଥିଲୁ । ଆମେ ସମସ୍ତେ ଘରକୁ ଯିବୁ । ଏଠାକୁ ମୁଁ ଶୀଘ୍ର ଫେରିଆସିବି । ବର୍ତ୍ତମାନ ମୋତେ ବିଦା କରନ୍ତୁ ।

ରାଜା ବୋଇତରେ ବସାଇ ଦେଇ ଅନେକ ଚାକରବାକର ଜିନିଷପାତ୍ର ଦେଇ ଝିଅ ଜୋଇଁଙ୍କ ବିଦାକରି ମନଦୁଃଖରେ ଘରକୁ ଗଲେ ।

ଏ ସଙ୍ଗାତଙ୍କ ବୋଇତ ସମୁଦ୍ରରେ ଅଲଗା ଅଲଗା ଚାଲିଥାଏ । ମହାଜନ ରାଜାଝିଅକୁ ଦେଖି ତା ପାଟିରୁ ଲାଳ ବୋହୁଥାଏ । ଯାକୁ ମୁଁ ସଙ୍ଗରେ ଆଣିଲି, ଏ ରାଜାର ଜୋଇଁହୋଇ ଏତେ ସୁନ୍ଦରୀ ଭାର୍ଯ୍ୟା ପାଇଲା । ହିଂସାରେ ଜଳି ଯାଉଥାଏ । କେମିତି ସଙ୍ଗାତକୁ ମାରିଲେ ସ୍ତ୍ରୀକୁ ଭୋଗ କରିବ, ଓର ଉଣ୍ଡୁଥାଏ ।

ଦିନେ ଡାକି କହିଲା ସଙ୍ଗାତେ, ସଙ୍ଗାତୁଣି ପାଇ ମୋତେ ଭୁଲିଗଲ, ଆସ ଆଜି ପଶାଖେଳିବା । ରାଜାପୁଅ ରାଜିହେବାରୁ ଏ ବୋଇତକୁ ସେ ବୋଇତ ପିଣ୍ଡ଼ ଲଗାଇ ଦେଲେ । ପ୍ରଶାର ଆସିଲାବେଳେ ଉଷାବତୀ କହିଲା, ମନେରଖ, ଉଙ୍ଗା କରକୁ ବସିବ ନାହିଁ !

ପ୍ରଶାର ମହାଜନ ଦୁହେଁଯାକ ପଶାଖେଳ ଖେଳିଲେ । ମହାଜନର ତ ପଶାଖେଳରେ ମନନାହିଁ । ସେ ସୁବିଧା ଉଣ୍ଡୁଥାଏ ଏତିକିବେଳେ ପଶାକାଠି ଗଡ଼ି ଯିବାରୁ ମହାଜନ ପୁଅ କହିଲା

ସଙ୍ଗାତେ, କାଠି ଗଡ଼ିଗଲା, ଧର ଧର । ପ୍ରହାର ନଇଁପଡ଼ି କାଠି ଧରିବାକୁ ଯାଆନ୍ତେ ପଛରୁ ମହାଜନ ଧକ୍କାଏ ଦେଲା ଯେ ଏକା ଧକ୍କାରେ ସେ ଯାଇ ସମୁଦ୍ର ପାଣିରେ ପଡ଼ିଲା । ଲକ୍ଷାବତୀ ଏହା ଦେଖି ତା ବୋଇତରେ ଥିବା ଦୁଇଟା ଖାଲି ମାଠିଆ ପାଣିକି ପକାଇ ଦେଲା । ପ୍ରହାର ମାଠିଆ ଉପରେ ଭର ଦେଇ ଭାସି ଭାସି ଆସୁଥାଏ ।

ମହାଜନ ରଜାଝିଅର ଧୂର୍ତ୍ତରବାକର ଓ ଦାସୀମାନଙ୍କୁ ପଇସା କଉଡ଼ି ଦେଇ ବଶକରି ଲକ୍ଷାବତୀ ରଜାଝିଅକୁ ବାହାଘର କରିବାକୁ ଚେଷ୍ଟାକଲା ।

ସ୍ୱାମୀ ଗିବାରୁ ଲକ୍ଷାବତୀ ବନଦୁର୍ଗାଙ୍କୁ ଡାକିଲା ।

ମାଗୋ ବନଦୁର୍ଗା ଶୁଣ ବଚନ୍ତି ।
ଲମ୍ବେ ଦର ମାତା ଫେଡ଼ ବିପତ୍ତି ॥
ଯେବେ ମୁହିଁ ସତୀ ପତି ମୋ ବର ।
ପ୍ରାଣ ଲଭି ଆସନ୍ତୁ ମୋ ପାଖର ॥
ଏ ଅଗାଧ ପାଣି
ଏଥୁଁ ପାର କର ଶିବ ଘରଣୀ ॥
ଭାସିଣ କୂଳରେ ଲଗନ୍ତୁ କାନ୍ତ ।
କେହି ନ କରନ୍ତୁ ତାଙ୍କୁ ଆଘାତ ॥
ଯାତ ସିଂହ ବଳ ଦେହରେ ଦିଅ ।
ତମି, ମଗର-ପାଆନ୍ତୁ ମା ଭୟ ॥
ମୋର ପ୍ରାର୍ଥନା ଏତେ
ନ ଦିଅ ଯାତନା ଜୀବନ ଥାନ୍ତେ ।

ବୋଇତ ଯାଇ ନିଜ ଦେଶରେ ଲଗିବାରୁ ବୋଇତରୁ ସବୁ ଲୋକ ଓହ୍ଲାଇଗଲେ । ମହାଜନ ପୁଅ ରଜାଝିଅକୁ ନେବାବେଳେ ସେ

ଦେଖିଲ ସେ କାବା ହେଲ, ଏଡ଼େ ସୁନ୍ଦର ସ୍ତ୍ରୀ କେଉଁଠୁ ଆଣିଲ । ଏକଥା ରଜାଙ୍କ କାନକୁ ଯିବାରୁ ରଜା ମହାଜନକୁ ଡକାଇନେଇ ପଗ୍ଚରିଲେ । ମହାଜନ ପୁଅ କହିଲ, ମୁଁ ବାଟରୁ ପାଇ ସାଙ୍ଗରେ ଆଣିଛି । ତହୁଁ ରଜା କହିଲେ ସବୁ ପଦାର୍ଥ ରଜାଙ୍କର । ଏହା କହି ଲୋକ ପଠାଇ ରଜାଝିଅକୁ ନିଜ ନଅରକୁ ନେଇଗଲେ । ରଜା ସେ କନ୍ୟାକୁ ଦେଖି ଖୁସି । ଅମ୍ବୁଲ ଦେଖିଲେ ଯେପରି ପାଟିରୁ ପାଣିବୁହେ, ରଜାଙ୍କ ପାଟିରୁ ସେପରି ଲାଳବୋହିଲ, କିପରି ଏ କନ୍ୟାସଙ୍ଗେ ସହବାସ କରିବେ । ରଜା କନ୍ୟାକୁ ପଗ୍ଚରନ୍ତେ ସେ

କିଛି ନ କହି ଏତିକ କହିଲ—

ନରବର ହରବର ନକର ଏ ଅବସରେ
ବନଦୁର୍ଗା ବ୍ରତେ ବ୍ରତୀ ହୋଇଛୁ ମୁହିଁ ବର୍ଷରେ ।
ମୋ ବ୍ରତ ସମାପ୍ତ ପର୍ଯ୍ୟନ୍ତେ ନରପତ
କରମେ ଅପେକ୍ଷା କର ମୋର ଏ ବଚନ ।
ଅଲଗା କରି ନଅର ତୋଳ ମୋହ ପାଇଁ
ବ୍ରତ ଶେଷ ଯାଏ ମୁହିଁ ରହିବଇଁ ତହିଁ ।

ରଜାଙ୍କର ହୁକୁମରେ ବନକରେ ନଅର ତୋଳା ସରିଲ । ସଖି ଜିଷାବଶି ଦାସୀ ପରିବାଷି ନେଇଯାଇ ସେଠାରେ ରହିଲ ।

ଏଣେ କଣ ହେଲ ପ୍ରବୀର କୁମାର ପାଣିରେ ଭସି ଭସି ସେହି ନ...କରେ ଗୋଟିଏ ମାଲୁଣିର ଫୁଲ ବଗିଚ୍ଚ କୂଳରେ ଲଗିଲ। ସେ ମାଲୁଣି ରଜାଙ୍କ ଉଆସ-ଖଟଣି । ସେ ନିତ ଉଆସକୁ ଫୁଲ ନେଇ ଦିଏ ।

ପ୍ରବୀର କୁମାର ଯୋଉ କୂଳରେ ଲଗିଲ, ସେ କୂଳକୁ ମେନକା ପୁରୁଷ ବେଶରେ ନିତ ଗାଧୋଇ ଆସେ । ସେ ସେଇ ମାଲୁଣିର

ଘରେ ଥାଏ । ଦଇବେ ସେ ଯେତେବେଳେ ଗାଧୋଇ ଆସିଛି, ଠିକ୍ ସେତିକବେଳକୁ ପ୍ରବୀରକୁମାର ସେଠି ଯାଇ ଲଗିଛି । ସେମାନେ ଦେଖିଲେ । ଅତି ସୁନ୍ଦର ଟୋକାଟାଏ ପାଣିରେ ଭସିଭସି ଶୋତା ପଡ଼ିଯାଉଛି । ତାକୁ ପାଣିରୁ ଉଠାଇଆଣି ସାସ୍ଥାମ କଲେ । ଚିହ୍ନାପରିଚୟ ଦୁଃଖ ସୁଖ ହେଲେ । ତହୁଁ ମାଲୁଣି ଘରକୁ ଗଲେ । ବଅର ଭଜନ ବନ୍ଧେ ସେଠି ସଙ୍ଗ ହୋଇଥାନ୍ତି । ଦ'ଖାଇ ବୋଲି ମାଲୁଣିକ ଭଣ୍ଡଥାନ୍ତି ।

ମାଲୁଣିଠାରୁ ଖବର ପାଇଲେ ଯେ ମହାଜନ ଗୋଟିଏ କନ୍ୟା କେଉଁ ବଦେଶରୁ ଆଣିଥିଲେ । ସେହି କନ୍ୟାକୁ ନେଇ ରଜା ନୂଆ ନଅର ତୋଳାଇ ରଖିଛନ୍ତି ।



## ପ୍ରସନ୍ନ କୁମାର

ପ୍ରସନ୍ନ କୁମାର ସବା ସାନଭାଇ । ସିଏ ଗୋଟିଏ ଆଡ଼େ ଯାଉଁ ଯାଉଁ ଅନେକ ଗ୍ରାମ, ନଗର, ନଦୀ, ପାହାଡ଼ ଓ ଅରଣ୍ୟ ବୁଲି ଅପସରା ପାହାଡ଼ ପାଖରେ ପହଞ୍ଚିଲେ ବେଳକୁ ସେଠାରେ ତାକୁ ସନ୍ଧ୍ୟା ହେଲା । ପାହାଡ଼ ବଣ ଯାଗା, ଭାରି ଡରଲାଗୁଥାଏ । ଏ ଟୋକାଯାଇ ଗୋଟିଏ ପୋଖରୀକୂଳରେ ମଣ୍ଡପଟିଏ ଅଛି ସେଇଠି ଫାଁଗାଳ ହୋଇ ବସିପଡ଼ିଲା । ବହୁଁ ବହୁଁ ଥଣ୍ଡାପବନ ଲଗି ତାକୁ ଘୁଇନିଦ ଲଗିଗଲା । ଅପ୍ସରାମାନେ ସେଠାକୁ ଖଟଣ ଆସନ୍ତି । ନାଚ ଗୀତ ଆମୋଦ ପ୍ରମୋଦ କରି ସ୍ୱର୍ଗକୁ ବୁଲିଯାଆନ୍ତି । ସେଦିନ ମଧ୍ୟ ଅପ୍ସରାମାନେ ସେଠିକୁ ଆସି ନାଚ ଗୀତ କରି ତୃପ୍ତି ମନରେ ବସିବାକୁ ମଣ୍ଡପ ପାଖକୁ ଗଲେ । ଦେଖିଲେ ମଣ୍ଡପ ଉପରେ ଗୋଟିଏ ଦିବ୍ୟସୁନ୍ଦର ଟୋକା ଶୋଇଅଛି । ଅପ୍ସରାମାନେ ଭାବିଲେ

ଏ ଜ ନ ଚ, ଜ୍ୟୋ ତ୍ସ୍ନା କୁ ନ ିରୀକ୍ଷଣ କଲେ । ଏହା ଦ୍ୱାରା ସେମାନେ ମନ୍ତ୍ରବିଦ୍ୟା ବଳରେ ସବୁ ଜାଣି ପାରିଲେ । ଏତିକି ବେଳେ ଏ ଟୋକାର ନିଦ ଭାଙ୍ଗିଗଲା । ଟୋକା ଦେଖିଲା ଅପୂର୍ବସୁନ୍ଦରୀ ସ୍ତ୍ରୀ ଗୁଡ଼ିଏ ସେଠାରେ ଠିଆ ହୋଇଛନ୍ତି । ଏ ଟୋକା ତରତରରେ ସେମାନଙ୍କ ଗୋଡ଼ତଳେ ଲମ୍ବ ହୋଇ ପଡ଼ିଗଲା । ଟୋକାର ଭକ୍ତି ଦେଖି ପକ୍ଷୀମାନଙ୍କ ମନରେ ଦୟା ହେଲା । ସେମାନେ ପ୍ରସନ୍ନକୁ କହିଲେ, ଆରେ ବାବୁ ଉଠ୍ । ତୁ କିଏ ? ତୋ ଘର କେଉଁଠାରେ ତୁ କାହିଁକି ଏଠାରେ ଆସି ପଡ଼ିଥିଲୁ ? ପକ୍ଷୀମାନଙ୍କ କଥାଶୁଣି ପ୍ରସନ୍ନ କୁମାର କହିଲା ମୁଁ ରାଜାର ପୁଅ । ଆମେ ପାଞ୍ଚଭାଇ ବିଦେଶକୁ ମନ୍ତ୍ରୀଙ୍କ ସାଙ୍ଗରେ ଆସିଥିଲୁ, ମୋର ଭାଇମାନେ କିଏ କୁଆଡ଼େ ଗଲେ । ସେମାନେ ଜୀବନରେ ଅଛନ୍ତି କି ନାହିଁ ? ଭାଇମାନଙ୍କୁ ଖୋଜି ଖୋଜି ମୁଁ ଏଠାରେ ଆସି ପଡ଼ିଥିଲି । ପଥ ଶ୍ରାନ୍ତିରେ ଏଠାରେ ଶୋଇ ପଡ଼ିଥିଲି । ମୋତେ ଜଣାଯାଉଛି କି ତୁମ୍ଭେମାନେ ଦେବକନ୍ୟା । ମୋ ଉପରେ ଦୟା କରି ମୋର ଭାଇମାନଙ୍କ ଖବର ମୋତେ କୁହ ।

ଟୋକାର ବିନୟ ଦେଖି ପକ୍ଷୀଙ୍କ ମଧ୍ୟରେ ଯେ ବଡ଼ ସେ ସବୁଙ୍କର ମୁଣ୍ଡଚିଏ ଟୋକାକୁ ଦେଇ କହିଲା, ତୁ ଏ ମୁଣ୍ଡକୁ ଘୁଞ୍ଚିଲେ ତିନିପୁରରେ ଯାହା ଯେଉଁଠି ଦେଖିବାକୁ ଇଚ୍ଛା କରିବୁ ତା ଦେଖିପାରିବୁ । ଆମ୍ଭେମାନେ ମଧ୍ୟ ଏ ଅମୃତ ଲଡ଼ୁ ଦେଉଛୁ, ଏହାକୁ ଖାଇଦେଲେ ତୋର ଭୋକ ଶୋଷ ମଧ୍ୟ ହେବ ନାହିଁ । ଆଜି ଏଠାରେ ତୁ ରହ ନାହିଁ । ଗନ୍ଧର୍ବମାନେ ଆସି ଦେଖିଲେ ତୋର ଭଲ ହେବ ନାହିଁ । ତୁ ବିପଦରେ ପଡ଼ିବୁ । ଏହା କହି ପକ୍ଷୀମାନେ ଚାଲିଗଲେ । ଏ ଟୋକା ମୁଣ୍ଡ ପାଇ ସେଠାକୁ ଫେରି ଆସିଲା । ଭାବିଲା ମୋର ଚାରିଭାଇଯାକ କେଉଁଠି କିପରି ଖବରେ

ଅଛନ୍ତି, ହେ ଦେବଦତ୍ତ ମୁଦ୍ର ମୋତେ ଦେଖାଇ ଦେ । ଏହା କହି ମୁଦ୍ରକୁ ଅନାଇଲେ ଦେଖିଲେ ।

ବଉଳଗଡ଼ ପ୍ରତାପ ଜେଲରେ ଅଛି ।
ତା ତଳ ଭାଇ ସେଠାରେ ରଜା ହୋଇଛି ॥
ତାହାର ତଳ ଭାଇ କାଳିଆ ମେଣ୍ଢା ।
ମାଲୁଣି ଘରେ ସେହି ହୋଇଛି ବନ୍ଧା ॥
ତାର ତଳଭାଇ ଭଉଜ ସଙ୍ଗରେ ।
ଗୁପ୍ତ ବେଶେ ରହିଅଛି ମାଲୁଣି ଘରେ ॥
ସାନ ଭାଇ ନାଗର ନେଇ ରାଜନ ।
ରାଣୀ ଦରବ ବୋଲି ହରଣ ମନ ॥
ନୂଆ ନଅର ତୋଳ ରଖିଛି ରଙ୍କି ।
ଭଉଜ ସେଠାରେ ଦୁର୍ଗା ବ୍ରତ କରଇ ॥

ଏ ସବୁ ଦେଖି ମନରେ ଭାବ ମୁଦ୍ରକ ପଚାରିଲା ଏମାନେ ସବୁ କେଉଁ ଦେଶରେ ଅଛନ୍ତି ଦେଖାଇ ଦେ । ଏ କଥା କହି ଯେମିତି ମୁଦ୍ରକ ବୁଲିଛି ଦେଖିଲା ଯେ,ମଣିପୁର ବୋଲି ଗୋଟାଏ ରାଜ୍ୟ ଅଛି । ସେହି ରାଜ୍ୟରେ ଏ ସମସ୍ତେ ଅଛନ୍ତି । କେହି କାହାକୁ ଚିହ୍ନିପାରୁ ନାହାନ୍ତି ।

ମୁଦ୍ରରେ ସିନା ପାଖରେ ଥିବାପରି ଦିଶିଲା, ହେଲେ ସେଠିକି ଯିବା ତ ସହଜ ନୁହେଁ । କେତେ ନଈ, କେତେ ବଣ, କେତେ ପର୍ବତ ପଡ଼ିବ । ମୁଦ୍ରକୁ ଅନାଇ ଅନାଇ ବାଟ ଚାଲୁଥାଏ । ଯଉଁ ଯାଉଁ ବାଟରେ ଗୋଟାଏ ପାହାଡ଼ ପଡ଼ିଲା । ସେ ପାହାଡ଼ରେ ଚନ୍ଦନ ରଜାର ଝିଅକୁ ଗୋଟିଏ ଅସୁରୁଣୀ ରଖିଥାଏ । ସେ ଝିଅଟି ଭାରି ସୁନ୍ଦରୀ, ଅନେକ ରକମ ବିଦ୍ୟା ଜାଣେ । ଏ ଟୋକା ସେ

ବାଟେ ଗଲାବେଳେ ଝିଅ ଏ ଟୋକାକୁ ଦେଖି ଲୋଭଇ ଗଲା । ତାହାର ମନରେ କାମଭାବ ଜାଗ୍ରତ ହେଲା । ସେ ତା ମା ଅପ୍ସରୁଣିକି କହିଲା, ମା ! ଏଇ ଯୋଉ ଟୋକା ଯାଉଛି ତାହାକୁ ମୁଁ ବାହାହେବି ।

ଅପ୍ସରୁଣି ଏକଥା ଶୁଣି ଯାଇ ଦେଖେତ ସେ ଟୋକା କନ୍ଦର୍ପ ପରି ସୁନ୍ଦର । ସେଥିରେ ମନକୁ ଖୁବ୍ ପାଇଗଲା । ସେ ତା ଝିଅ ଚମ୍ପାବତୀକି ଆଣି ଟୋକାପାଖରେ ପହଞ୍ଚିଲା । ଟୋକାକୁ କହିଲା, ଏ ଗନ୍ଧର୍ବର ଝିଅ । ମୋ ପାଖରେ ଥାଏ । ତୁମର ରୂପ ଦେଖି ତେଣ ପଦରେ ବରଣ କରୁଛି । ତୁମେ ଦୁହେଁ ଆଜି ଗନ୍ଧର୍ବ ବିଧାନରେ ବାହାହୋଇ ଏଠାରେ ଆନନ୍ଦରେ ରୁହ ।

ଟୋକାତ ଚମ୍ପାବତୀକୁ ଦେଖିଲାବେଳୁ ତା ମନ ଭାବୁ ସେହିଠ କପରି ମୁଁ ଏହାକୁ ଭାରିଜା କରିପାରନ୍ତି କି ? ଅପ୍ସରୁଣି କହିବା ମାତ୍ରକେ ଟୋକା ରାଜି ହୋଇଗଲା । ଦୁଇଜଣଯାକ ବାହା ହୋଇ ଆନନ୍ଦରେ ରହିଲେ । ଦୁଇ ଚାରିଦିନ ଯିବାରୁ ଗନ୍ଧର୍ବ କନ୍ୟା ପ୍ରଦ୍ୟୁମ୍ନକୁମାରକୁ ସବୁ ହାଲ କହିଲା । ସେଠୁ ଦୁହେଁଯାକ ଅପ୍ସରୁଣି ଠାରୁ ବିଦାୟ ନେଇ ଆସିଲେ । ଅପ୍ସରୁଣି ବିଦା କଲାବେଳେ କହିଲା, ସେ ଦେଶ ଏଠାରୁ ଅନେକ ବାଟ । ନିଅ ଏ ଗୁଳି, ଏ ଗୁଳିରେ ଦୁହେଁଯାକ ବସ । ଏ ଗୁଳି ତୁମ ଦୁହିଁଙ୍କୁ ଉଡ଼ାଇନେଇ ସେଦେଶରେ ଛାଡ଼ିଦେବ । ଆଉ ତୁମ ଦୁହିଁଙ୍କ ଯେବେ କିଛି ବିପତ୍ତି ପଡ଼ିବ, ତେବେ ମୋତେ ସୁମରଣା କଲାମାତ୍ରେ ମୁଁ ସେଠାରେ ପହଞ୍ଚି ତୁମ ଦୁହିଁଙ୍କ ଉଦ୍ଧାର କରିଦେବି । ଏହା କହି ସେହି ସିଦ୍ଧଗୁଳି ଆଣିଦେଲା । ଦୁଇଜଣଯାକ ଗୁଳି ଉପରେ ବସି ବାଟ କହିଦଅନ୍ତେ ଗୁଳି ଆକାଶରେ ଉଡ଼ାଇନେଇ ସେଇ ଦେଶରେ ପହଞ୍ଚାଇଦେଲା

ପ୍ରସନ୍ନ କୁମାର ଗନ୍ଧବରଜା ଝିଅକୁ ନେଇ ସେ ଦେଶରେ ବୁଲୁଥାଏଁ ।

ମାଲୁଣି ଘରେ ତ ଝିଅର ଗାଜନ ଦୁଇଘଇ ବୋଲି କହୁଥାଆନ୍ତି । ସେ ମାଲୁଣି ରଜାଘରକୁ ଫୁଲହାର ନେଇ ନିତି ଯାଏ । ସେଦିନ ରଜାପୁଅ ମାଲୁଣୀକି କହିଲ, ମାଉସି । ମୁଁ ଆଜି ଗୋଟିଏ ହାର ଗୁନ୍ଥିଛି । ତୁ ରଜାଘରକୁ ଫୁଲନେଇ ଗଲବେଳେ ମୋ ଫୁଲ ହାରଟି ନେଇଯିବୁ । ତୁମର ଯେଉଁ ନୂଆ ରାଣୀ ଅଲଗା ନଅରରେ ରହି ବ୍ରତ କରୁଛନ୍ତି, ଏ ହାରଟି ତାହାଙ୍କୁ ଦେଇ ଦେବୁ । ମାଲୁଣି କହିଲ, ହଉରେ ପୁଅ ମୁଁ ଗଲବେଳେ ଦେବି । ରଜାପୁଅ ପ୍ରଭାର ଫୁଲଗୁନ୍ଥି ତା ଭିତରେ ଖଣ୍ଡେ ପତ୍ର ଦେଇ, ପତ୍ରରେ ଲେଖିଲ—

ଆରେ ମଦାଳସି ଭ୍ରମି ଭ୍ରମି ଆସି
ତୋହର ଭରସା ବଳେ ।
ମାଲୁଣି ବସାରେ ବସା କରିଅଛି
ଭଷା ଲେଖେ ଭାଗ୍ୟ ବଳେ ।
ରେ ପିକ ବଚନା ଏ ଯେତେ ଛଳନା
ଦେନାଙ୍କର ହୃଦୟରେ ।
ଅମୃତ ବୃକ୍ଷରେ ବିଷ ଫଳ ଫଳେ
ଦେଖାଯାଏ ଏହିଠାରେ ।
କୋକିଳ ବଚନୀ ଯେନ ମୋ ବସୁମି
ପକ୍ଷ ଫେଡ଼ ପଢ଼ିବାରେ ।
ଯାହାକୁ ବରିଲୁ ବେଦୀ ମଣ୍ଡପରେ
ମୁଁ ସେହି, ଅଛି ଏଠାରେ ॥

ଏ ପଦ୍ମ ଫୁଲ ତୋଡ଼ା ଭିତରେ ମୁଦି ମାଳୁଣି ରଜାଘରକୁ ଗଲାବେଳେ ତାହା ହାତରେ ଦେଲା—ମାଳୁଣି ଫୁଲ ନେଇ ରଜାଙ୍କ ନଅରକୁ ଯାଇ ପ୍ରତ୍ୟେକ ଜାଗାରେ ଫୁଲମାଳ ଦେଲା । ପ୍ରଥମରେ ରଜାଙ୍କୁ ତାପରେ ରାଣୀଙ୍କୁ ତାପରେ ଅନ୍ୟମାନଙ୍କୁ ଦେଇ ନୂଆ ନଅରକୁ ଗଲା । ସେଠାରେ ଏ ଟୋକା ଦେଇଥିବା ଫୁଲହାର ପୋଟଳଟି ଦେଇ ଠିଆ ହେଲା । ନୂଆରାଣୀ ଫୁଲ ପୋଟଳ ଫିଟାଇ ତା ଭିତରୁ ପଦ୍ମ ଫଟି ଝର ଝର ହୋଇ କାନ୍ଦିବାକୁ ଲାଗିଲେ । ଏ ଘଟଣା ଦେଖି ଭିତରରେ ମାଳୁଣି କାଠଭୁତ । କେତେବେଳେ ରାଣୀ ମାଳୁଣିକି କହିଲେ ଏ ଫୁଲ କିଏ ଗୁନ୍ଥିଛି ସତକଥା ମାଉସୀ । ମାଳୁଣି କହିଦେଲା ମୋ ଝିଅ ଶାଶୁ ଘରୁ ଆସିଛି ସେଇ ଗୁନ୍ଥିଛି ଏହାଶୁଣି ରାଣୀ କହିଲେ କାଲି ତୋ ଝିଅକୁ ସାଙ୍ଗରେ ଆଣିବୁ । ତହୁଁ ମାଳୁଣି କହିଲା—ମୋରିକି ଗରିବଘର, ଗହଣାଗାଣ୍ଠି ଭଲ ଲୁଗା ନାହିଁ ଝିଅ କେମିତି ଆସିବ । ଏକଥା ଶୁଣି ରାଣୀ ଗହଣା, ପାଟସାଢ଼ୀ, ଓଢ଼ଣି ମାଳୁଣିକି ଦେଇ କହିଲେ, ତୁ ମାଉସୀ ଏସବୁ ନେଇଯା ତୋ ଝିଅକୁ ପିନ୍ଧାଇ ଏଠାକୁ ଆଣିବୁ । ମାଳୁଣି ଲୁଗା ଗହଣା ନେଇ ତାକୁ ଗଣ୍ଠିରି ବାନ୍ଧି ଟୋକେଇରେ ପୁରାଇ ଘରକୁ ଆସିଲା ।

ଏ ଟୋକାକୁ ଆସି କହିଲା, ଆରେ ପୁଅ । ତୁ କମିତି ଫୁଲ ଗୁନ୍ଥିଦେଲୁ ଯେ ନୂଆରାଣୀ ସେ ଫୁଲକୁ ଦେଖି ଧାରି ଲୋତକ ଗଲେ—ମୋତେ କହିଲେ ଏଫୁଲ କିଏ ଗୁନ୍ଥିଛି । ମୁଁ ଗୁଣ୍ଡାଳୁଣି ଟାର ପାଟିରୁ ବାହାରିଲା ଶାଶୁଘରୁ ମୋ ଝିଅ ଆସିଛି ସେଇ ଗୁନ୍ଥି ଦେଇଛି । ସେଥୁ ରାଣୀ ଏକ ଜବରକଲେ କି ତୋ ଝିଅକୁ ଆଣିବୁ ମୁଁ ବୁଦ୍ଧି ଖରଚକରି କହିଲି—ମୋ ଝିଅର ଗହଣା ନାହିଁ କି ଭଲ ଲୁଗା ନାହିଁ ସେ କେମିତି ଆସିବ । ସେଥୁ ସେ ମୋତେ

ଗହଣା ଲୁଗା ସବୁ ଦେଇ କହିଲେ ଏସବୁ ନେଇଯା ପିନ୍ଧାଇକରି ଆଣିବୁ । ମୋର ଆଜ ଘର କଅଣ—ମୁଁ ଯେଏବୁ ସାଙ୍ଗରେ ନେଇ ଆସିଲି – ସେ ଟୋକା କହିଲା ହଇଲେ ମାଉସୀ ମୁଁ ପର ମରଦ ପୁଅ । ହଁରେ ବାବୁ ମୋ ପାଟିରୁତ ଉଇରେ ବାହାରିଗଲା, ଆଜ କଅଣ କରିବ । ତୁ ବାପ ଏସବୁ ପିନ୍ଧିକରି ଚାଲ ମୋ ସାଙ୍ଗରେ । ନ ହେଲେ ମୋର ଏ ମୁଣ୍ଡ ରହିବ ନାହିଁ ।

ଏ କଥା ଶୁଣି ରାଜାପୁଅ ଆନନ୍ଦ ହୋଇ ସାଙ୍ଗଙ୍କୁ କହିଲା– ସାଙ୍ଗ କହିଲା ହଉ ସୁବିଧା ଯୋଗ ପଡ଼ୁଛି । ତୁମେ ମାଇକିନିଆ ବେଶରେ ଯାଇ ସବୁ ହାଲଚାଲ୍ ଦେଖିଆସ । ତାପରେ ଏ ଟୋକା ସ୍ତ୍ରୀ ବେଶ ସାଜି ଗହଣାଗଣ୍ଠି ପିନ୍ଧି ଲୁଗା ପିନ୍ଧିବାରୁ ସ୍ୱର୍ଗର ଅପ୍‌ସରି ଭଳି ଦିଶିଲା ।

ତହିଁ ଆରଦିନ ସନ୍ଧ୍ୟାରେ ଫୁଲଗୁନ୍ଥା ମାଲୁଣି ଝିଅକୁ ସାଙ୍ଗରେ ନେଇ ରାଜାଘରକୁ ଗଲା — ସେଠାରେ ସମସ୍ତେ ଦେଖି ପଚାରିଲେ ଏଇଟି କିଏ ? ମାଲୁଣି କହିଲା ଏ ମୋର ଝିଅ । ଶାଶୁଘରୁ ଆସିଲା । ମୋ ସଙ୍ଗେ ଜିଗର କଲା । ମୁଁ ରାଜାଙ୍କ ଘର ଦେଖିବାକୁ ଯିବି । ତେଣୁ ତାକୁ ସାଙ୍ଗରେ ଆଣିଛି ସମସ୍ତଙ୍କୁ ଫୁଲ ଦେଇ ନୂଆ ରାଣୀଙ୍କ ନିଅଁଳେ ପହଞ୍ଚିଲେ ।

ସେଠି ପହଞ୍ଚି ରାଜାପୁଅ ଦେଖିଲା ପତିବ୍ରତା ତାର ଭାରିଯା ଜୟାବତୀ ସେଠାରେ ଅଛି । ଏ ତାକୁ ଚିହ୍ନିଲା—ସେ ଏହାକୁ ନିଜର ସ୍ୱାମୀ ବୋଲି ଚିହ୍ନି ପାରିଲା । ସେଠୁ ଏହାର ହାତଧରି ନେଇ ନିଜର ପଲଙ୍କ ଉପରେ ବସାଇ ନେଲା । ଦାସୀମାନେ ଦେଖି ଭାବୁଥାନ୍ତି ମାଳିଘରୁ ଏମନ୍ତ ସୁନ୍ଦରୀ ମାଇପିଟିଏ କିଏ । ରାଜା ଘରଠୁଁ ବଳି ସୁନ୍ଦରୀ । ସେତ ରାଜାପୁଅ କନ୍ଦର୍ପ ପରି ରୂପ—

ଯାଉଛି । ମାଲୁଣି ଚତୁର ସବୁ ଦେଖି ଆବାକାବା ହୋଇ ଯାଉଥାଏ । ସେ ଭାବୁଥାଏ ଏ ମାଇପି ନଅରକୁ ମୁଁ ବୃନ୍ଦାକୁଣି ପୁରୁଷଟାକୁ ମାଇକିନିଆ ବେଶକରି ତ ଆଣିଲି ଯେବେ ଧରାପଡ଼େ ମୋ ଜୀବନ ଆଉ ରହିବ ନାହିଁ । ସେଠୁ ରାଜାପୁଅ ନୂଆ ରାଣୀଙ୍କୁ କହିଲ ତୁମ୍ଭେ କାଲି ରାଜାଙ୍କୁ କୁହ - ମୋର ଦୁର୍ଗାବ୍ରତ ଆଜିତ ପୂର୍ଣ୍ଣ ହେଲା---ନାନା ଉତ୍ସବ ଖେଳରାଗ ହେବ । ଆପଣ ଗୋଟିଏ ଥାଳିରେ ହଜାରେ ସୁନାମୋହର ରଖି ଦେଶରେ ଘୋଷଣା ଦିଅ ଯେଉଁଲୋକ ପ୍ରତାପ କୁମାର, ପ୍ରମୋଦ କୁମାର, ପ୍ରଦୀପ୍ତ କୁମାର, ପ୍ରବୀର କୁମାର ଓ ପ୍ରସନ୍ନ କୁମାର କଥା କହିପାରିବ ସେ ଲୋକ ଏହି ମୋହର ଥାଳିଟି ନେବ । ଦୁତହାତରେ ଏକଥା କହି ଢେଙ୍କୁରା ଦେଇ ନଗରମଧ୍ୟରେ ଘୋଷଣା ଦିଅ । ଏହା କହି ମାଲୁଣି ବୁଢ଼ି ସଙ୍ଗରେ ଘରକୁ ଫେରିଆସିଲା ।

• ତହିଁ ଆରଦିନ ଜୟାବତୀ ରାଜାଙ୍କ ପାଖକୁ ବେରଦେଲା । ଆଜି ମୋ ବ୍ରତ ପୂର୍ଣ୍ଣହେବ । ଆପଣ ଗୋଟିଏ ଥାଳିରେ ହଜାରେ ସୁନାମୋହର ପୂରାଇ ନଗରସାରା ବୁଲାଇ ଢେଙ୍କୁରା ଦେବ, ଯେଉଁ ଲୋକ ପ୍ରତାପକୁମାର, ପ୍ରମୋଦକୁମାର, ପ୍ରଦୀପ୍ତକୁମାର, ପ୍ରବୀର କୁମାର ଓ ପ୍ରସନ୍ନକୁମାର କଥା କହିପାରିବ ସେ ଏହି ମୋହରଥାଳି ନେବ । ଏହା କହନ୍ତେ ରାଜା ଶୁଣି ଭାବିଲେ ଏ ମୋ ପୁଅମାନଙ୍କ କଥା କେଉଁଠୁ ଜାଣିଲା । ଏହା ମନେକରି ସୁବର୍ଣ୍ଣଥାଳିରେ ହଜାରେ ମୋହର ଦେଇ ଦେଶରେ ବୁଲାଇଲେ । ପ୍ରବୀର ମନେକରିଥିଲା ଏ ଥାଳି ନେଇ ରାଜାଙ୍କୁ ସବୁକଥା କହିଦେବ । ସୁନା ମୋହର ଥାଳି ଧରି ଡାକୁଆ ବୁଲୁଛି, କହିକହିକା ଯାଉଛି, ଯେଉଁଲୋକ ପ୍ରତାପ କୁମାର, ପ୍ରମୋଦ କୁମାର, ପ୍ରଦୀପ୍ତକୁମାର, ପ୍ରବୀରକୁମାର, ପ୍ରସନ୍ନ କୁମାରଙ୍କ କଥା କହିବ, ସେ ଏ ସୁନାମୋହର ଥାଳିଟି ନେବ

ଏହି ସମୟରେ ସବା ସାନଭାଇ ପ୍ରସନ୍ନକୁମାର ଗନ୍ଧର୍ବ କନ୍ୟାକୁ ସଙ୍ଗରେ ନେଇ ସେହି ଦେଶରେ ବୁଲୁଥିଲେ । ସେ ଏକଥା ଶୁଣି ମୋହର ଥାଳଟି ଧରି ଉଠାଇ ନେଲେ, କହିଲେ ଆରେ ଦୂତ ମୋ ସଙ୍ଗରେ ଚାଲ, ରାଜା ପରା ପାଞ୍ଚ କୁମାରଙ୍କ କଥା ଶୁଣିବାକୁ ଚାହାଁଇଛନ୍ତି—ମୁଁ କହିବି—ଏତକ ଶୁଣି ରାଜାଙ୍କ ଲୋକମାନେ ତାଙ୍କୁ ସଙ୍ଗରେ ନେଇଗଲେ । ଏ ଟୋକାଟ ମୁହଁବଳରେ ଯେପରି ଚାଲୁଣି ଜଳରେ ସବୁ ଦେଖାଯାଏ ସେପରି ଦେଖି ପାରୁଛି । ଏ ରାଜାଘରେ ପହଞ୍ଚି କହିଲା ଯାଅ, ତୁମ୍ଭେମାନେ ରାଜାଙ୍କୁ କହିବ, ଗୋଟିଏ ପାଖରେ ସେ ବସିବେ । ମଝିରେ ପରଦା ପଡ଼ିବ । ମୁଁ ଏ ପାଖରେ ବସିବି ସେ ମୋତେ ଦେଖିବେ ନାହିଁ କି ମୁଁ ତାଙ୍କୁ ଦେଖିବି ନାହିଁ । ତେବେ ସେ ପାଞ୍ଚ କୁମାରଙ୍କ କଥା ମୋଠାରୁ ଶୁଣିବେ ।

ଦୂତ ଯାଇ ରାଜାଙ୍କୁ ଜଣାଇଲା ମହିମା, ଆପଣ ଥାଳ ନେଇ ଡାକ ଡାକ ଯାଉଥିଲୁ । ଗୋଟିଏ ଅତି ସୁନ୍ଦର ଟୋକା ଗୋଟିଏ ସୁନ୍ଦରୀ ସ୍ତ୍ରୀଲୋକକୁ ନେଇ ଆସୁଥିଲା । ସେ ଏକଥା ଶୁଣି ସୁନା ମୋହର ଥାଳଟି ନେଇ କହିଲା, ମୁଁ କହିବି । ସେ ଆମ୍ଭ ସଙ୍ଗରେ ଆସିଛି । ସେ କହୁଛି—ଗୋଟାଏ ପାଖରେ ରଜା ବସିବେ ମଝିରେ ପରଦା ପଡ଼ିବ । ଆର ପାଖରେ ମୁଁ ବସିବି । ସେ ମୋତେ ପାଞ୍ଚ କୁମାରଙ୍କ କଥା ପଚାରିବେ, ମୁଁ ତାଙ୍କୁ ବୁଝାଇ କହିଦେବି ।

ଟୋକାର କଥାନୁସାରେ ରାଜା ବସିଲେ । ମଝିରେ ପରଦା ପଡ଼ିଲା । ଆର ପାଖରେ ପ୍ରସନ୍ନକୁମାର ଗା ସ୍ତ୍ରୀକୁ ନେଇ ବସିଲା ସେଠୁ ରାଜା ପଚାରିଲେ ତୁମ୍ଭେ ପାଞ୍ଚ କୁମାରଙ୍କ ସମ୍ବନ୍ଧେ କଅଣ ଜାଣିଛ କୁହ । ସେଠୁ ପ୍ରସନ୍ନକୁମାର କହିଲା, ଆପଣ ଶୁଣନ୍ତୁ ।

ପ୍ରମୋଦ କୁମାର ଏ ଦେଶର ରାଜା
ମନୋରମା ପାଟରାଣୀ ।
ବଡ଼ଭାଇ ତାଙ୍କ ପ୍ରତାପ ବର୍ମାରେ
ଦୁଃଖେ ପଡ଼ୁ ବନ ଗଣି ॥
ତାହାଙ୍କର ନାମ ମେନକା ସୁନ୍ଦରୀ
ରହିଛନ୍ତି ମାଲୁଣି ଘର ।
ମନ୍ତ୍ରୀଙ୍କ ପ୍ରଦାପ୍ତ କଳା ମେଣ୍ଢା ହୋଇ
ବନ୍ଦୀ ସେ ମାଲୁଣି ପୁର ॥
ତାହାଙ୍କର ନାମ ସତ୍ୟ ସରୋଜନୀ
ସ୍ୱାମୀ ବିଚ୍ଛେଦରେ ଯେଣୁ ।
ପିତା ଆଜ୍ଞା ନେଇ ଭଇରବୀ ବ୍ରତେ
ଦୁର୍ଗା ଦେବୀଙ୍କି ପୂଜଇ ॥
ତାଙ୍କ ଭଣ୍ଡ ଭାଇ ପ୍ରବୀର କୁମାର
ମହାଜନ କପଟରେ ।
ଭାସି ଭାସି ଆସି ମାଲୁଣିର ଘରେ
ଅଛି ଭଜନ ପାଖରେ ।
ତାହାଙ୍କର ନାମ ଉଷାବତୀ ଅଟେ
ହୋଇଣ ସେ ନ ଆରଣୀ ।
ଦୁର୍ଗାବ୍ରତ କରି ଅନ୍ୟ ନଅରରେ
ସତୀତ୍ୱ ରଖିଛି ପୁଣି ॥
ସବା ସାନଭାଇ ପ୍ରସନ୍ନ କୁମାର
ଦେବର କନ୍ୟା ସଙ୍ଗରେ ।
କଥା କହୁଅଛି ବଡ଼ଭାଇ ଆଗେ
ଦୋଷ ନାହିଁ ମୋର ବାପେ ॥

ଏତକ ଶୁଣି ପ୍ରମୋଦ କୁମାର ମଝି ପରଦା ଆଡ଼େଇ ଦେଇ ତରତର ଆସି ଭାଇଙ୍କ କୁଣ୍ଢାଇପକାଇ ଭେ ଭେ କରି କାନ୍ଦି ଉଠିଲେ ଦ'ଭାଇ ଯାକ ବେଳେବେଳଯାଏ ତାଙ୍କର ଶୋଧ ଶାନ୍ତ ହେବାରୁ ତୁନି ହେଲେ । ତେଣେ ଅନ୍ତପୁରେ ପାଟରାଣୀ ଏକଥା ଶୁଣି ଦାସୀ ପରିବାର ସଙ୍ଗରେ ନେଇଆସି ସାନ ଯା ଗନ୍ଧର୍ବକନ୍ୟା ଚମ୍ପାବତୀଙ୍କୁ କୋଳକରି ଅନ୍ତଃପୁରକୁ ନେଇଗଲେ ।

ସଭାଲୋକେ ଆବାକାବା ହୋଇ ଦେଖୁଥାନ୍ତି । ସେଠୁ ଦ'ଭାଇ ଯାକ କଏଦଖାନାକୁ ଯାଇ ବଡ଼ଭାଇ ପ୍ରତାପକୁମାରଙ୍କୁ ଆଣିଲେ । ତାଙ୍କର ହାତ ଶୀଘ୍ର ଖିଅର ହୋଇ ସ୍ନାନସାରି ରାଜବେଶରେ ମଣ୍ଡିତ ହୋଇ ଭାତ ଖାଇଯାକ ବସିଲେ ।

ସେଠୁ ରାଜା ଲୋକ ପଠାଇ ସବାଷ୍ଟ ପାଲଙ୍କି ପଠାଇ ଗାଭିଳ ଓ ପ୍ରବୀରଙ୍କୁ ମାଲୁଣିଘରୁ ଆଣିଲେ । ବଡଯାଆ ଆସିବ ବୋଲି ରାଣୀ, ଗନ୍ଧର୍ବକନ୍ୟା, ନୂଆରାଣୀ ଏମାନେ ଅନାଇଥାନ୍ତି । ସବାଷ୍ଟ ଆସି ପହଁଚନ୍ତେ ଦାସୀମାନଙ୍କ ସଙ୍ଗେ ସାନଯାଆ ଯାଇ ବଡଯାଆଙ୍କ ଗୋଡ଼ତଳେ ପଡ଼ି କୁଣ୍ଢାଇପକାଇଲେ । ତାପରେ ପୋଷାକ ବଦଳାଇ ଏକାସଙ୍ଗରେ ବସିଲେ ।

ସେଠୁ ରାଜା ହୁକୁମଦେଲେ ଯାଅ ସେ କପଟୀ ମାଲୁଣିକୁ ଧରିଆଣ । ରାଜାଙ୍କ ଲୋକଯାଇ ସେ କପଟୀମାଲୁଣିକୁ ଧରିଆଣିଲେ ରାଜା ପଚାରିଲେ ତୁ ଗୋଟାଏ ପୁରୁଷକୁ ମନ୍ତ୍ରବଳରେ ଗଧାମେଣ୍ଢା କରି ରଖିଛୁ, ଶୀଘ୍ର ତାକୁ ଏଠାକୁ ଆଣ । ମାଲୁଣି କହିଲା ମହିମା, କି ଅସମ୍ଭବ କଥା କହୁଛନ୍ତି । ମଣିଷ କେଉଁଠି ମେଣ୍ଢା ହେଉଛି ।

ଏହାଶୁଣି ରାଜା ହୁକୁମ ଦେଲେ, ଉତ୍ତମ, ମଧ୍ୟମ କରି ଜଳଖିଆ ଦେଅ । ତଥାଟା ବାହାର ପଡ଼ିବ । ତଟୁଆଳ ସଙ୍ଗେ ସଙ୍ଗେ ବୃକ୍ଷରେ ପାଞ୍ଚଯାକ ପାହାର ବସାଇଦେବାରୁ ମାଲୁଣି କହିଲା ମୁଁ ଆଣୁଛି । ଏହାକହି କଳାମେଣ୍ଢାକୁ ଅଣି ଧଳାଫୁଲ ସୁଙ୍ଘାଇ ଦଅନ୍ତେ ସେ ନିଜ ଦେହ ପାଇଗଲା । ଭାଇମାନଙ୍କୁ ଦେଖି ଖୁସିହୋଇ ପାଖକୁ ଆସିଲା ।

ଚତୁର୍ଥ ପ୍ରବୀର କହିଲା ମୋ ସୂର୍ଯ୍ୟକାନ୍ତ ମଣି ଦେ । ମାଲୁଣି ମାଡ଼ ଉପରେ ମଣିଟି ଆଣିଦେଲା । ପାଞ୍ଚ ଭାଇଯାକ ବର୍ବର ହରି ମହାଜନର ସମସ୍ତ ସମ୍ପତ୍ତି ଲୁଟିକରି ଆଣି ତାକୁ ଜେଲ ଦେଲେ । ତଥାପି ମାଲୁଣିକୁ ସାତବେଣୀ କରି ତା ଧନସମ୍ପତ୍ତି ହରହାଇ ନିଜ ଦଖଲକୁ ଆଣି ତାକୁ ନଗରରୁ ବାହାରକରି ଦେଲେ । ଯେଉଁ ମାଲୁଣୀ ଭାଇ ଭାଉଜଙ୍କୁ ରଖିଥିଲା ତାକୁ ଅନେକ ଧନ ଦେଲେ । ବଡ଼ଭାଇ ପ୍ରତାପ କୁମାର ତା ସ୍ତ୍ରୀ ମେନକାକୁ ନେଇ ରହିଲା ।

ପ୍ରମୋଦକୁମାର ମନୋରମା ସହିତ ରହିଲା । ପ୍ରଦୀପ୍ତକୁମାର ତ ଭରଜା ନାହିଁ ସେ ଏକା ରହିଲା । ପ୍ରବୀରକୁମାର ଉଷାବତୀକୁ ନେଇ ରହିଲା । ପ୍ରସନ୍ନକୁମାର ଗନ୍ଧର୍ବ କନ୍ୟାକୁ ନେଇ ରହିଲା ।

ତନେ ପାଞ୍ଚଭାଇଯାକ ବର୍ବର ହରି ମନ୍ତ୍ରୀ ଜମା ରାଜ୍ୟଦେଇ ବୁଢ଼ାମନ୍ତ୍ରୀ ଯେଉଁଠାରେ ଥିଲେ ସେଠାରେ ଯାଇ ପହଞ୍ଚିଲେ । ମନ୍ତ୍ରୀ ଦେଖିଲେ ସମସ୍ତେ ବାହା ହୋଇଛନ୍ତି, ସମସ୍ତଙ୍କ ସମସ୍ତଙ୍କ ସ୍ତ୍ରୀ ସଙ୍ଗରେ ଅଛି । ଏକା ପ୍ରଦୀପ୍ତ କୁମାର ସ୍ତ୍ରୀ ନାହିଁ । ସେଠୁ ମନ୍ତ୍ରୀ ଭାବଲେ ଏହ ଟୋକାଟା କରୁଛି କର୍ମର ଦୁହେଁ ।

ମନ୍ତ୍ରୀ ପାଞ୍ଚକୁମାର ସ୍ବରବୋହୁଙ୍କୁ ସଙ୍ଗରେ ନେଇ ଆସୁଛନ୍ତି । ପ୍ରଦୀପ୍ତ ଯେଉଁ ରାଜାଝିଅକୁ ବାହାହୋଇ ଘୁଡ଼ ବୁଲଯାଇଥିଲା, ତାର ସ୍ତ୍ରୀ ଭୈରବୀ ବ୍ରତ କରି ରହିଥିଲା । ସେହିଠାରେ ପହଞ୍ଚ ସେଦିନ

ବିଶ୍ରାମ ନେଲେ । ସେ ଦେଶ ରାଜାଙ୍କ ଅରି ଖଣ୍ଡେ ଲେଖାଥାଏ ।
ଯେ ବିଦେଶୀ ଆସି ରହନ୍ତି ଦୂତ ତାକୁ ସେ ଲେଖା ଦେଖାଏ ।
ତହିଁରେ ଲେଖାଥାଏ—

ସ୍ନେହେ ଯୋଡ଼େ ପେଟ ନାଗର ଉଚାଟ
ମନ ତ ନୁହଇଁ ସ୍ଥିର ।
କି କରିବି ସହି ଖାଦ୍ୟ ବିଅ କହି
ପ୍ରାଣ ହେଉ ଶାନ୍ତ ମୋର ।

ଏହି ଲେଖାଟି ନେଇ ସମସ୍ତଙ୍କୁ ଦେଖାଏ, କେହି ଏହାର ଉତ୍ତର ଦେଇ ପାରନ୍ତି ନାହିଁ । ସମସ୍ତେ ନେଇ ପଢ଼ନ୍ତି, କେହି କିଛି ଜବାବ ଦେଇ ପାରନ୍ତି ନାହିଁ । ଏ ପାଞ୍ଚଭାଇ ଓ ମନ୍ତ୍ରୀତ ସେଠାରେ ଅଛନ୍ତି ଏହି ସମୟରେ ସେ ଦେଶର ଦୂତ ଲେଖାଟି ଆଣି ଦେଖାଇଲା । ସମସ୍ତେ ଦେଖିଲେ; କେହି କହି ପାରିଲେ ନାହିଁ । ଯେତେବେଳେ ପ୍ରଦୀପ୍ତ କୁମାର ଦେଖିଲା ସେ ଲେଖାଟିକୁ ନେଇ ପଢ଼ିଲା, ଚିନ୍ତିକରି ତା ତଳେ ଲେଖିଦେଲା ।

ବରଣ ଡ଼ାଳି ସୁନ୍ଦର ଜଳସ ନଡ଼ିଆ ପାଳ
ହୋମ କାଠ ରନ୍ଧା ଘିଅ ।
ରଖିଛୁ ଜୀବନ ପିତ ।

ଏତିକି ଲେଖି ଦେଇ ଦୂତ ହାତରେ ଦେଲା । ଦୂତ ସେ ଲେଖାକୁ ନେଇ ଦାସୀ ହସ୍ତରେ ଦିଅନ୍ତେ ଦାସୀ ଯାଇ ଜେମାଙ୍କୁ ଦେଖାଇଲା । ସେହି ଲେଖା ପଢି ଜେମା ଜାଣିଲା, ଏ ମୋହର ବର । ନ ହେଲେ ଏ ଗୁପ୍ତକଥା କିଏ ଜାଣନ୍ତା । ଏ ନିଶ୍ଚୟ ମୋର ବର । ସେ ସେଠୁ ଦାସୀକି କହିଲା, ଯା ରାଜାଙ୍କୁ କହିବୁ ମୋର ବର ଆସିଲେଣି, ସେ ଆସି ଆମର ଅତିଥିଶାଳାରେ ଅଛନ୍ତି । ଆପଣ ସବୁ ସଜାଇ କରି ଅସନ୍ତୁ । ବରକୁ ଆମନ୍ତ୍ରଣ କରି ଆଣିବା ।

ରାଜା ଏକଥା ଶୁଣି ମନ୍ତ୍ରିକି କହିଲେ ତୁମ୍ଭେ ଶୀଘ୍ର ଯାଇ ବାଜା ବ୍ରାହ୍ମଣ ସକଳଙ୍କର ଆଣ । ରଜାଘର କେଉଁକଥାର ଅଭାବ । ସଙ୍ଗେ ସଙ୍ଗେ ତୋପ ପଡ଼ିଲା, ବାଇଦ ବାଜିଲା, ବ୍ରାହ୍ମଣମାନେ ମଙ୍ଗଳାଷ୍ଟକ ପଢ଼ିଲେ, ଏହିପରି ଆଡ଼ମ୍ବରରେ ରାଜା ଚଉଦୋଳାରେ ଝିଅକୁ ସାଙ୍ଗରେ ନେଇ ଅତିଥିଶାଳାରେ ପହଞ୍ଚିଲେ । ମନ୍ତ୍ରୀ ଓ ଏ ପାଞ୍ଚଭାଇଯାକ ଏ ଘଟଣା ଦେଖି ଉଠି ଠିଆ ହେଲେ । ରାଜାଝିଅକୁ ପ୍ରତାପ କୁମାର ତାହାଙ୍କର ସ୍ୱାମୀ ବୋଲି ଚହ୍ନାଇ ଦେବାରୁ ରାଜା ଆଦର ଗୌରବ କରି ତାକୁ ସାଙ୍ଗରେ ନେଇ ନଅରକୁ ଆସିଲେ । ଅନ୍ୟ ଚାରିଭାଇ ଓ ମନ୍ତ୍ରୀକୁ ମଧ୍ୟ ସମ୍ମାନ ସହିତ ନଅରକୁ ଆଣି ନାନାଦି ଉତ୍ସବ କଲେ । ମନ୍ତ୍ରୀଙ୍କୁ କହିଲେ, ମୋର ତ କେହି ନାହିଁ । ମୋ ଅନ୍ତେ ଜ୍ୱାଇଁ ଏଠାରେ ରାଜାହେବେ । ସେ ଏଠାରେ ରହନ୍ତୁ । ତହୁଁ ମନ୍ତ୍ରୀ କହିଲେ, ଆମ୍ଭେମାନେ ଦେଶକୁ ଯାଇ ବୁଢ଼ା-ରଜାଙ୍କ ସଙ୍ଗେ ଦେଖାକରି ତୁମ୍ଭର ଜ୍ୱାଇଁଙ୍କୁ ଏଠାକୁ ପଠାଇ ଦେବୁ ।

ସେଠୁ ପାଞ୍ଚଭାଇଯାକଙ୍କୁ ମହାସମାରୋହରେ ମନ୍ତ୍ରୀ ସାଙ୍ଗରେ ନେଇ ଆସିଲେ । ଏଣେ ରାଜା ରାଣୀ ପୁଅମାନେ ଅନ୍ତଯାଏ ନ ଫେରିବାରୁ ବଡ଼ ବ୍ୟସ୍ତରେ ଥାଆନ୍ତି । ପୁଅର ମଙ୍ଗଳ ସକାଶେ ଦେବତା ମନ୍ଦିରରେ ପୂଜା ହୋମାଦି କରୁଥାନ୍ତି । ଏହି ସମୟରେ ଦେଶାନ୍ତର ଯାଇ କହିଲା, ପ୍ରଭୁ ଆପଣଙ୍କ ପୁଅମାନଙ୍କୁ ମନ୍ତ୍ରୀ ସାଙ୍ଗରେ ନେଇ ଆସୁଛନ୍ତି । ରାଜରାଣୀ ଏହାଶୁଣି ଆନନ୍ଦର ସୀମା ରହିଲା ନାହିଁ । ସେ ସେଠୁ ଦାସ ଦାସୀ ଅନ୍ୟାନ୍ୟ ପାତ୍ରମନ୍ତ୍ରୀଙ୍କୁ କହିଲେ, ତୁମ୍ଭେମାନେ ଯାଅ ପାଛୋଟି ନେଇଆସ ।

ରାଜାଙ୍କ ହୁକୁମ ପାଇଲା ମାତ୍ରକେ ପାତ୍ର ମନ୍ତ୍ରୀ ନଗର ଲୋକମାନେ ସେମାନଙ୍କୁ ଆଣିବାକୁ ଯାଇ ଅଧାବାଟରୁ ପାଛୋଟି ଆଣିଲେ । ଦେଖଣାହାରି ପଲ ପଲ ହୋଇ ଦେଖିବାକୁ ଦଉଡ଼

ବିଶ୍ରାମ ନେଲେ । ସେ ଦେଶ ରାଜାଙ୍କ ଅର ଖଣ୍ଡେ ଲେଖାଥାଏ । ଯେ ବିଦେଶୀ ଆସି ଉହନ୍ତି ଦୂତ ତାଙ୍କୁ ସେ ଲେଖା ଦେଖାଏ । ସେଥିରେ ଲେଖାଥାଏ—

ଘୋଡ଼େ ପୋଡ଼େ ପେଟ ନଗର ଉଚାଟ
ମନ ତ ନୁହଁଇ ସ୍ଥିର ।
କ କଷ୍ଟ ସହି ଖାଦ୍ୟ ବଣ ଭୁହି
ପ୍ରାଣ ହୋଇଛି ଶାନ୍ତ ମୋର ।

ଏହି ଲେଖାଟି ନେଇ ସମସ୍ତଙ୍କୁ ଦେଖାଏ, କେହି ଏହାର ଉତ୍ତର ଦେଇ ପାରନ୍ତି ନାହିଁ । ସମସ୍ତେ ନେଇ ପଢ଼ନ୍ତି, କେହି କିଛି ଜବାବ ଦେଇ ପାରନ୍ତି ନାହିଁ । ଏ ପାଞ୍ଚଭାଇ ଓ ମନ୍ତ୍ରୀତ ସେଠାରେ ଅଛନ୍ତି ଏହି ସମୟରେ ସେ ଦେଶର ଦୂତ ଲେଖାଟି ଆଣି ଦେଖାଇଲା । ସମସ୍ତେ ଦେଖିଲେ; କେହି କହି ପାରିଲେ ନାହିଁ । ଯେତେବେଳେ ପ୍ରଦୀପ୍ତ କୁମାର ଦେଖିଲା ସେ ଲେଖାଟିକୁ ନେଇ ପଢ଼ିଲା, ଠିକରି ତା ତଳେ ଲେଖିଦେଲା ।

ବରଣ ଡାଳ ଖୁଡ଼ିଲ କଳସ ନଡ଼ିଆ ଫାଳ
ହୋମ କାଠ ରନ୍ଧା ଭାତ ।
ରଖିଛି ଜୀବନ ମିତ ।

ଏତିକି ଲେଖି ଦେଇ ଦୂତ ହାତରେ ଦେଲା । ଦୂତ ସେ ଲେଖାକୁ ନେଇ ଦାସୀ ହସ୍ତରେ ଦିଅନ୍ତେ ଦାସୀ ଯାଇ ଜେମାଙ୍କୁ ଦେଖାଇଲା । ସେହି ଲେଖା ପଢି ଜେମା ଜାଣିଲା, ଏ ମୋହର ବର । ନ ହେଲେ ଏ ଗୁପ୍ତକଥା କିଏ ଜାଣନ୍ତା । ଏ ନିଶ୍ଚୟ ମୋର ବର । ସେ ସେଠୁ ଦାସୀକି କହିଲା, ଯା ରାଜାଙ୍କୁ କହିବୁ ମୋର ବର ଆସିଲେଣି, ସେ ଆସି ଆମର ଅତିଥିଶାଳାରେ ଅଛନ୍ତି । ଆପଣ ସବୁ ସଜଳ କରି ଅସନ୍ତୁ । ବରକୁ ଆମନ୍ତ୍ରଣ କରି ଆଣିବା ।

ରାଜା ଏକଥା ଶୁଣି ମନ୍ତ୍ରିକି କହିଲେ ତୁମ୍ଭେ ଶୀଘ୍ର ଯାଇ ବାଜା ବ୍ରାହ୍ମଣ ସକଳଙ୍କର ଆଣ । ରଜାଘର କେଉଁକଥାର ଅଭାବ । ସଙ୍ଗେ ସଙ୍ଗେ ତୋପ ପଡ଼ିଲା, ବାଇଦ ବାଜିଲା, ବ୍ରାହ୍ମଣମାନେ ମଙ୍ଗଳାଷ୍ଟକ ପଢ଼ିଲେ, ଏହିପରି ଆଡ଼ମ୍ବରରେ ରାଜା ଚଉଦୋଳାରେ ଝିଅକୁ ସାଙ୍ଗରେ ନେଇ ଅତିଥିଶାଳାରେ ପହଞ୍ଚିଲେ । ମନ୍ତ୍ରୀ ଓ ଏ ପାଞ୍ଚଭାଇଯାକ ଏ ଘଟଣା ଦେଖି ଉଠି ଠିଆ ହେଲେ । ରାଜାଝିଅକୁ ପ୍ରତାପ କୁମାର ତାହାଙ୍କର ସ୍ୱାମୀ ବୋଲି ଚହ୍ନାଇ ଦେବାରୁ ରାଜା ଆଦର ଗୌରବ କରି ତାକୁ ସାଙ୍ଗରେ ନେଇ ନଅରକୁ ଆସିଲେ । ଅନ୍ୟ ଚାରିଭାଇ ଓ ମନ୍ତ୍ରୀକୁ ମଧ୍ୟ ସମ୍ମାନ ସହିତ ନଅରକୁ ଆଣି ନାନାଦି ଉତ୍ସବ କଲେ । ମନ୍ତ୍ରୀଙ୍କୁ କହିଲେ, ମୋର ତ କେହି ନାହିଁ । ମୋ ଅନ୍ତେ ଜ୍ୱାଇଁ ଏଠାରେ ରାଜାହେବେ । ସେ ଏଠାରେ ରହନ୍ତୁ । ତହୁଁ ମନ୍ତ୍ରୀ କହିଲେ, ଆମ୍ଭେମାନେ ଦେଶକୁ ଯାଇ ବୁଢ଼ା-ରଜାଙ୍କ ସଙ୍ଗେ ଦେଖାକରି ତୁମ୍ଭର ଜ୍ୱାଇଁଙ୍କୁ ଏଠାକୁ ପଠାଇ ଦେବୁଁ ।

ସେଠୁ ପାଞ୍ଚଭାଇଯାକଙ୍କୁ ମହାସମାରୋହରେ ମନ୍ତ୍ରୀ ସାଙ୍ଗରେ ନେଇ ଆସିଲେ । ଏଣେ ରାଜା ରାଣୀ ପୁଅମାନେ ଅଜଯାଏ ନ ଫେରିବାରୁ ବଡ଼ ବ୍ୟସ୍ତରେ ଥାଆନ୍ତି । ପୁଅର ମଙ୍ଗଳ ସକାଶେ ଦେବତା ମନ୍ଦିରରେ ପୂଜା ହୋମାଦି କରୁଥାନ୍ତି । ଏହି ସମୟରେ ଦେଶାନ୍ତର ଯାଇ କହିଲା, ପ୍ରଭୁ ଆପଣଙ୍କ ପୁଅମାନଙ୍କୁ ମନ୍ତ୍ରୀ ସାଙ୍ଗରେ ନେଇ ଆସୁଛନ୍ତି । ରାଜରାଣୀ ଏହାଶୁଣି ଆନନ୍ଦର ସୀମା ରହିଲା ନାହିଁ । ସେ ସେଠି ଦାସ ଦାସୀ ଅନ୍ୟାନ୍ୟ ପାତ୍ରମନ୍ତ୍ରୀଙ୍କୁ କହିଲେ, ତୁମ୍ଭେମାନେ ଯାଅ ପାଛୋଟି ନେଇଆସ ।

ରାଜାଙ୍କ ହୁକୁମ ପାଇବା ମାତ୍ରକେ ପାତ୍ର ମନ୍ତ୍ରୀ ନଗର ଲୋକମାନେ ସେମାନଙ୍କୁ ଆଣିବାକୁ ଯାଇ ଅଧାବାଟରୁ ପାଛୋଟି ଆଣିଲେ । ଦେଖଣାହାରି ଦଳ ଦଳ ହୋଇ ଦେଖିବାକୁ ଦଉଡ଼

ଥାନ୍ତି । ଠେଲା ଠେଲିରେ କିଏ କାହା ଉପରେ ପଡ଼ିଯାଉଥାଏ । ପୁଅ ବୋହୂମାନେ ଯାଇ ବାପ ମା’ ଶାଶୁଶ୍ୱଶୁରଙ୍କ ଗୋଡ଼ତଳେ ପଡ଼ିଲେ । ରାଣୀ ଦାସୀ ପରିଚାରିମାନଙ୍କୁ ନେଇ ବୋହୂମାନଙ୍କୁ ବନ୍ଦାପନା କରି ଘର ଭିତରକୁ ନେଇଗଲେ । ଶଙ୍ଖନାଦ, ହୁଳହୁଳି ଶବ୍ଦରେ ନଅର ଫାଟି ପଡ଼ୁଥାଏ । ନଗରରେ ଆନନ୍ଦ ଉତ୍ସବ ଲାଗିଗଲା । କେଉଁଠି ବାଜା, କେଉଁଠି ଗୋଟିପୁଅନାଚ, କେଉଁଠି କୀର୍ତ୍ତନ, କେଉଁଠି ପାଲା ଇତ୍ୟାଦି ନାନା ପ୍ରକାର ଆମୋଦ ପ୍ରମୋଦରେ ନଗର ଉଚ୍ଛୁଳି ପଡ଼ିଲା ।

ତହିଁ ଆରଦିନ ସଭ ବସିଲା । ସଭାରେ ପାତ୍ର ମନ୍ତ୍ରୀ ପ୍ରଜା ପାଟକ ଆସି ପହଞ୍ଚିଗଲେ । ସେଠି ରାଜା କହିଲେ ମନ୍ତ୍ରୀ ତୁମେତ ପିଲାମାନଙ୍କୁ ନେଇ ଏତେଦିନଯାଏ ଆସିକି ପରୀକ୍ଷା ତ କରିଥିବ । କେଉଁ ପୁଅ ସିଂହାସନରେ ବସିବ କୁହ ?

ମନ୍ତ୍ରୀ କହିଲେ, ମହାରାଜ, ମୁଁ ସମସ୍ତ ପିଲାମାନଙ୍କୁ ବିଦେଶ ପଠାଇ ପରୀକ୍ଷା କରିଛି, କେହି କାହାକୁ ବୁଦ୍ଧିବିଦ୍ୟାରେ ବା ଚତୁରପଣରେ କମ୍ ନୁହନ୍ତି । ବଡ଼ପୁଅ ଶାସ୍ତ୍ର ଅନୁସାରେ, କୁଳପ୍ରଥା ଅନୁସାରେ, ସିଂହାସନ ଅଧିକାରୀ । ସେ ଏହି ସିଂହାସନର ଅଧିକାରୀ ହେଉନ୍ତୁ । ବାକି ଚାଙ୍କ ତଳ ଭଉଣୀଇ ସେମାନଙ୍କର ଶ୍ୱଶୁରଘର ସିଂହାସନରେ ବସି ରାଜା ହେବେ । ସବା ସାନପୁଅ ପ୍ରସନ୍ନକୁମାର ସେ କୌଣସି ରାଜ୍ୟ ପାଇନାହିଁ ତାକୁ ଏ ରାଜ୍ୟରୁ ପାଞ୍ଚଖଣ୍ଡି ଗ୍ରାମ ଦେଇ ନଅର ତୋଳାଇ ଦେଇ ଜମିବାଡ଼ି ଖଞ୍ଜି ଦିଅନ୍ତୁ । ସେ ବଡ଼ଭାଇଙ୍କ ସାମନ୍ତରାଜା ହୋଇ ରହିବେ । ମନ୍ତ୍ରୀଙ୍କ ଏକଥା ଶୁଣି ସମସ୍ତେ ମନ୍ତ୍ରୀଙ୍କୁ ଧନ୍ୟ ଧନ୍ୟ କଲେ । ମନ୍ତ୍ରୀଙ୍କ କଥାମତେ ରାଜା ରାଜହୋଇ ବଡପୁଅକୁ ସିଂହାସନରେ ବସାଇ ଯୁବରାଜ ପଣରେ ମୁକୁଟ ଦେଲେ । ସାନପୁଅକୁ ପାଞ୍ଚଖଣ୍ଡି ଗ୍ରାମ

ଦେଇ ନଅର ତୋଳାଇଦେଇ ଜମିବାଡ଼ି ଖଞ୍ଜିଦେଇ ସେଠାରେ ନେଇ ରଖାଇଲେ । ଆଉ ତିନ ପୁଅ କହୁଦନ ରତ୍ନ ବିଦାୟନେଇ ନିଜ ନିଜ ଶ୍ୱଶୁର ସିଂହାସନରେ ବସି ରାଜାହେଲେ । ସମସ୍ତେ ଖୁସିରେ ଯୁଗରାଇଜ କଲେ, ମୁଁ ଗଲାରୁ କଥା କହିଲେ ନାହିଁ ।

---

## ଲକ୍ଷ୍ମଣ କୁମାର

ହସ୍ତିନା ବୋଲି ଗୋଟିଏ ରାଜ୍ୟ । ସେ ଦେଶରେ ଦଣ୍ଡପାଣି ନାମକ ଜଣେ ରାଜା ରାଜତ୍ୱ କରୁଥାନ୍ତି । ତାଙ୍କ ରାଣୀଙ୍କ ନାଁ ଲକ୍ଷା । ରାଜା ରାଣୀଙ୍କର ଅଭେଦ ପ୍ରୀତି । ରାଜା ରାଣୀଙ୍କ ଛଡ଼ା ସଂସାରସାରା ସବୁ ସ୍ତ୍ରୀକି ମା' ସମାନେ ଦେଖନ୍ତି । ଯେ ବୟସରେ ସାନ ସେମାନଙ୍କୁ ଭଉଣୀ ବୋଲି ମନେ କରନ୍ତି । ଧର୍ମରେ ପ୍ରଜାମାନଙ୍କୁ ପାଳୁଥାନ୍ତି । ଏହିପରି ପନ୍ଦର ବରଷ ହୋଇଗଲା । ରାଜାଙ୍କର କିଛି ପିଲାପିଲି ହେଲେ ନାହିଁ । ଏଥିସକାଶେ ରାଜା ରାଣୀଙ୍କ ମନରେ ଘୋର କଷ୍ଟ ।

କଥାରେ କହନ୍ତି ଅଣ୍ଟକୁଡ଼ା ମୁହଁ ଚାହିଁଲେ ଅଧର୍ମ ହୁଏ । ପିତୃଲୋକ ପାଣି ପାଆନ୍ତି ନାହିଁ ।

ଦିନେ ମେହେନ୍ତରାଣୀର ଶ୍ରାଦ୍ଧ ପଡ଼ିଲା । ସେ ରାଜାଘର ପାଇଖାନା ସଫାଇ କରେ । ସେଦିନ ତାର ଶ୍ରାଦ୍ଧ ହେବ ବୋଲି ସେ ପାହାନ୍ତାରୁ ଚାଟି ସଫା କରିବାକୁ ଆସିଛି । ଏହି ସମୟରେ ରାଣୀଙ୍କ ଝାଡ଼ା ତଳକ ହେବାରୁ ରାଣୀ ଶୁଣେଇ ଡକେ କରିଛନ୍ତି, ହାଡ଼ିଆଣୀ ରାଣୀଙ୍କି ଅନେଇ ଦେଇ ଝାଡ଼ୁ ଫୋପେଇ ପକାଇ ପଳାଇଲା । କହିଲା ଆଜି ଅଣ୍ଟକୁଡ଼ୀ ମୁହଁ ଚାହିଁଲି । କିପରି ଶ୍ରାଦ୍ଧ ଦେବି ।

ରାଣୀ ଶୁଣିକରି ବଣିଜେସାରି ପୋଇଲମାନଙ୍କ ଆଗେ ଯାଇ କହିଲେ । ପୋଇଲମାନେ କହିଲେ, ଆମ କର୍ମତ ମନ୍ଦ, ନ ହେଲେ ଘରର ହାଡ଼ିଆଣୀଟା ହୋଇକରି ଝାଡ଼ୁ ପକେଇଦେଇ ପଳାନ୍ତା । ତାର ଆଜ ଶ୍ରାଦ୍ଧ ସେଥି ସକାଶେ ସେ ଅନ୍ଧାର ଜାଙ୍ଗୁଲୁ ଜାଙ୍ଗୁଲୁରୁ ଆସିଥିଲା, ତୁମେ ତ ଅପୁତ୍ରୀ, ତମ ମୁହଁ ଦେଖିବାରୁ ପଳାଇଲା । ପୋଇଲଙ୍କଠାରୁ ଏହା ଶୁଣି ରାଣୀ ବଡ଼ ଦୁଃଖିତ ହୋଇ କହିଲେ, ରାଣୀ ହୋଇ କ'ଣ ହେବ—ଘରର ହାଡ଼ିଆଣୀକି ଲକ୍ଷ୍ୟ ହୋଇଲି । ମୋର ସକଳ ସମ୍ପତ୍ତି ବୃଥା । ସେଇଠୁ ଖାଇଲେ ନାହିଁକି ପିଇଲେ ନାହିଁ, ବଡ଼ ଦୁଃଖିତରେ ରହିଲେ । ରାଜାଙ୍କ ନଅରପାଖରେ ଅଛି ଶିବ ପାର୍ବତୀଙ୍କ ଦେଉଳ । ରାଣୀ ରୋଜ ଗାଧୋଇସାରି ଅନ୍ଧାର ଅନ୍ଧାର ହୋଇଥାଏ, ତାଙ୍କ ଅଗଣା ପହଁରି ଗମ୍ଭୀରକୁ ଯାଇ ନିଜର ପୁତ୍ରକଷ୍ଟ ଜଣାଇ ଆସନ୍ତି ।

ଏମନ୍ତେ କେତେଦିନ ଗଲା । ଦିନକରେ ଶିବ ସ୍ୱପ୍ନରେ ଆଜ୍ଞା କଲେ ଯେ କପାଳରେ ପୁଅକପାଳ କରି ନାହିଁ, ଏତେସେବା କାହିଁକି କରୁଛୁ ? ଯାଃ, ତତେ ଗୋଟିଏ ସୁନ୍ଦର ସନ୍ତାନ ଦାନ କଲି ।

ଯଥା ସମୟରେ ରାଣୀଙ୍କର ପୁତ୍ର ପ୍ରସବ ହେଲା । ସତେକି ଚନ୍ଦ୍ର ଉଦିଆ । ପିଲାଟି ନାମ ରଖିଲେ ଲକ୍ଷ୍ମଣ କୁମାର ।

ଯଥାସମୟରେ ଲକ୍ଷ୍ମଣକୁମାର ଅତି ସୁକୁମାରୀ ରଜାଝିଅକୁ ବିବାହ କରାଇଦେଲେ । ପାତ୍ର, ମନ୍ତ୍ରୀ, ସୈନ୍ୟସାମନ୍ତ ଓ ପ୍ରଜାମାନେ ଉଜାଡ଼ି ଭୋଜ ଖାଇଲେ । ଶିବଙ୍କ କୃପାରୁ ରଜା-ରାଣୀ ପୁଅବୋହୂଙ୍କୁ ଧରି ଖୁସିରେ ରହିଲେ ।

ଧରମ ବଳରେ ବିପତ୍ତି ସବୁ ହୁଏ ଖଣ୍ଡନ
ସତ୍ୟରେ ଥିଲେ ଯେ ମିଳଇ ବନ୍ଧୁ ମୁଖ ଦର୍ଶନ

ସ ମା ପ୍ତ